# ବାପୁଜୀଙ୍କ ଅମର ବାଣୀ



ଶ୍ରୀ ବୀରକଶୋର ଦାସ

# ବାପୁଜୀଙ୍କ ଅମରବାଣୀ



ସଂକଳୟିତା—ଶ୍ରୀ ବୀରକିଶୋର ଦାସ, ବି. ଏ. ଏଚ୍. ଡି. ସି.

ପ୍ରକାଶକ—
ଶ୍ରୀ ଗୋବିନ୍ଦ ଚରଣ ପାଣ୍ଡ
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରି
କଟକ—୨

ପ୍ରଥମ ସଂସ୍କରଣ
ଜାନୁୟାରୀ, ୧୯୬୭

ମୁଦ୍ରାକର—
ଶ୍ରୀ ରାଧାନାଥ ସମବାୟ ପ୍ରେସ
ବାଲୁବଜାର, କଟକ—୨

ମୂଲ୍ୟ ଟ ୧-୫୦

ପୂଜ୍ୟପାଦ ଆଚାର୍ଯ୍ୟ ହରିହର ଦାଶ
ମହନୀୟ ଚରିତେଷୁ—

ଆଚାର୍ଯ୍ୟ ଆପଣେ, ତବ ତନୁ-ମନ ଦରପଣେ
ବାପୁଜୀଙ୍କ ପ୍ରତିଚ୍ଛବି ଦିଶେ,
ଅମଳ ଚରଣ ତଳେ ଅରପିଲି ପୂଜାଫୁଲ
ଆଶାକରି ତବ ଶୁଭାଶିଷେ ।

ଗୁଣମୁଗ୍ଧ
ସଂକଳୟିତା

# ପ୍ରାକ୍-କଥନ

ଜାତିର ଜନକ ଗାନ୍ଧିଜୀଙ୍କର ଅମରବାଣୀ ସଂକଳନ ବିସ୍ତୃତ ସାଗର ବେଳାରୁ ଉପଳ ଖଣ୍ଡ ସଂଗ୍ରହ ସଦୃଶ ଭୁଲମାତ୍ର । ଏହା ପୂର୍ବରୁ ୧୯୬୮ ମସିହାରେ ମୁଁ ଯେତେବେଳେ ବାପୁଜୀଙ୍କର India of my dream (ମୋ ସ୍ୱପ୍ନର ଭାରତ) ଅନୁବାଦ କରିଥିଲି, ସେତେବେଳେ ବାପୁବାର୍ତ୍ତାର ଏକ ସଂକଳନ କରିବାର ପ୍ରୟାସ ମୋ ମନରେ ଜାଗି ଉଠିଥିଲା । ଆଜି ସେହି ପ୍ରୟାସ ବାସ୍ତବ ରୂପରେଖ ନେବାକୁ ଯାଉଛି, ସେଥିପାଇଁ ମୁଁ ଆନନ୍ଦିତ ।

ବାପୁଜୀ ଆଜକୁ ଅଠର ବର୍ଷ ହେଲା ଇହଲୀଳା ସମ୍ବରଣ କଲେଣି; କିନ୍ତୁ ତାଙ୍କର ସେହି ଅମୃତନିସ୍ୟନ୍ଦୀ ଅମରବାଣୀ ଆଜି କେବଳ ଭାରତର କାହିଁକି ସମଗ୍ର ବିଶ୍ୱବାସୀଙ୍କ ମନରେ ଅଳିଭା ମୁଦ୍ରାଙ୍କ ଆଙ୍କି ପାରିଛି । ଆଜିର ଆତ୍ମବିସ୍ମୃତ ଜଗତରେ ବାପୁଙ୍କର ସେହି ମହତ୍ ଆଦର୍ଶ ଓ ବାର୍ତ୍ତା ସମସ୍ତଙ୍କୁ ଉଦ୍‌ବୁଦ୍ଧ କରିବ ସେଥିରେ ସନ୍ଦେହର ଅବକାଶ ନାହିଁ ।

ଓଡ଼ିଶା ବୁକ୍ ଷ୍ଟୋରର ପ୍ରତିଷ୍ଠାତା ଶ୍ରୀଯୁକ୍ତ ଗୋବିନ୍ଦ ଚରଣ ପାତ୍ର ଏହି ସଂକଳନଟିର ମୁଦ୍ରଣ ଦାୟିତ୍ୱ ବହନ କରିଥିବାରୁ ମୁଁ ତାଙ୍କୁ ହାର୍ଦ୍ଦିକ ସାଧୁବାଦ ଜଣାଉଛି ।

ତା ୩୦-୧-୬୬
(ଗାନ୍ଧିଜୀଙ୍କ ଶ୍ରାଦ୍ଧ ଦିବସ)

ବିନୀତ
ସଂକଳୟିତା

# ସୂଚୀ

ନ
ନମ୍ରତା
ନାରୀ
ନିୟମିତତା
ନିମନ୍ତ୍ରଣ
ପ
ପୁସ୍ତକ
ପତ୍ରିକା
ପଞ୍ଚାୟତ
ପ୍ରାର୍ଥନା
ପ୍ରେମ
ବ
ବନ୍ଧୁତା
ବୁଦ୍ଧି
ବ୍ରହ୍ମଚର୍ଯ୍ୟ
ବ୍ରାହ୍ମଣ
ଭ
ଭାରତ
ଭୁଲ
ମ
ମାତାପିତା
ମୌନ

ମହାଭାରତ
ମଦ୍ୟପାନ
ମୃତ୍ୟୁ
ଯ
ଯୁଦ୍ଧ
ଯୁବକ
ଯୌତୁକ
ର
ରାମନାମ
ରାମାୟଣ
ବ
ବିଶ୍ୱାସ
ବ୍ରତ ଓ ସଂଯମ
ବେଦପାଠ
ବ୍ୟାୟାମ
ଶ
ଶାସକ
ଶାନ୍ତି
ଶାସ୍ତ୍ର
ଶିକ୍ଷା
ଶ୍ରଦ୍ଧା

ସ
ସତ୍ୟ
ସତ୍ୟାଗ୍ରହ
ସଫେଇ
ସର୍ବୋଦୟ
ସଙ୍ଗୀତ
ସମବାୟ
ସ୍ୱରାଜ
ସାଧୁ
ସେବା
ସଂଯମ
ସଂଗଠନ
ସଂସ୍କୃତ
ସୁଖୀ
ସୂତାକଣା
ସ୍ୱଦେଶୀ
ସ୍ତ୍ରୀ
ସ୍ୱାବଲମ୍ବନ
ସ୍ୱାଧୀନତା
ସମାଜବାଦ
ସ୍ୱାସ୍ଥ୍ୟ
ହ
ହରିଜନ
ହିନ୍ଦୀ

:*:—

# ବାପୁଜୀଙ୍କ ଅମର ବାଣୀ

## ଅହିଂସା

୧ । ଅହିଂସା ହେଉଛି ପ୍ରେମର ପରାକାଷ୍ଠା ।

୨ । ଅହିଂସା ହେଉଛି କ୍ଷତ୍ରିୟ ଧର୍ମର ପରସୀମା ।

୩ । ଅହିଂସା ମନରେ ଅଭୟ ଦାନ କରିଥାଏ ।

୪ । ମର୍ଯ୍ୟାଦାରଖି କାମ କରିବା, ମନରେ ଅଭିମାନ ନ ଆଣିବା ଓ ନମ୍ର ହୋଇ ଚଳିବା ହେଉଛି ଅହିଂସାର ନିୟମ ।

୫ । ହିଂସାର ଜବାବ ମୁଁ ଅହିଂସା କରିଆରେ ଦେଇପାରେ ।

୬ । ମଣିଷ ଜାତିର ମୃତ୍ୟୁ ହୋଇ ନାହିଁ; କାରଣ ଅହିଂସା ସବୁଠାରେ ଓତପ୍ରୋତ ଭାବେ ଜଡି ରହିଛି ।

୭ । ଯେଉଁଠାରେ ଅହିଂସା ଅଛି ସେଠାରେ ଶାନ୍ତି, ସଦିଚ୍ଛା ଓ ଆତ୍ମତ୍ୟାଗ ବିରାଜମାନ ।

୮ । ଏହି ଦୁନିଆରେ ଦୁଃଖ କଷ୍ଟ ଲାଘବ ପାଇଁ ଅହିଂସା ହେଉଛି ସର୍ବୋତ୍କୃଷ୍ଟ ଉପାୟ ।

୯ । ଅହିଂସା ମାର୍ଗରେ ସତ୍ୟର ଶୋଧନ ସମ୍ଭବପର ।

୧୦ । ଅହିଂସା ହେଉଛି କ୍ଷତ୍ରିୟର ଧର୍ମ । ମହାବୀର, ବୁଦ୍ଧ, ରାମ, କୃଷ୍ଣ ଇତ୍ୟାଦି କ୍ଷତ୍ରିୟ ଥିଲେ; କାରଣ ଅହିଂସାର ସେମାନେ ଥିଲେ ପରମ ଉପାସକ ।

୧୧ । ଅହିଂସା ନିର୍ବଳର ଅବଲମ୍ବନ ନୁହେଁ, ଏହା ହେଉଛି ବୀରୋଚିତ ଧର୍ମ ।

୧୨ । ପୂର୍ଣ୍ଣ ଅହିଂସା ବୀରତ୍ୱର ପ୍ରକୃଷ୍ଟ ପରିଚାୟକ ।

୧୩ । ଆମର ଅହିଂସା ଯୁଦ୍ଧ କ୍ଷେତ୍ରର ଅସ୍ତ୍ର ଶସ୍ତ୍ର ତୁଳନାରେ ପ୍ରଶମିତ ହୋଇଯିବା ଉଚିତ ନୁହେଁ ।

୧୪ । ଶତ୍ରୁକୁ ମିତ୍ରରେ ପରିଣତ କରିବା ହେଉଛି ଅହିଂସାର ଏକ ଯାଦୁକରୀ ଶକ୍ତି ।

୧୫ । ମୁଁ ଗୁରୁଗମ୍ଭୀର ସ୍ୱରରେ କହିପାରେ ଯେ ଅହିଂସା-କ୍ଷମା ବୀରର ହେଉଛି ପ୍ରଧାନ ଲକ୍ଷଣ ।

୧୬ । ଯେଉଁଠାରେ ଦୟା ନାହିଁ, ସେଠାରେ ଅହିଂସା ନାହିଁ । ଯେଉଁଠି ଯେତିକ ଦୟା ସେଇଠି ସେତିକ ଅହିଂସା ।

୧୭ । ବିନା ଅହିଂସାରେ ସତ୍ୟ ଅନ୍ୱେଷଣ ଅସମ୍ଭବ ।

୧୮ । ଆମ୍ଭେମାନେ ହିଂସାରେ ମାରିବାକୁ ତାଲିମ ପାଉ; କିନ୍ତୁ ଅହିଂସାରେ ମରିବାକୁ ତାଲିମ ପାଇବା ଉଚିତ ।

୧୯ । କାହା ମନରେ ସନ୍ତାପ ନ ଦେବା ହେଉଛି ଅହିଂସା ।

୨୦ । ଅହିଂସା ସାମାଜିକ, ବ୍ୟକ୍ତିଗତ ନୁହେଁ ।

୨୧ । ସତ୍ୟକୁ ଛାଡ଼ି ଦେଲେ ଅହିଂସା ହେଉଛି ଦୁନିଆର ସବୁଠାରୁ ବଡ଼ ସକ୍ରିୟ ଶକ୍ତି ।

୨୨ । ଶେଷପର୍ଯ୍ୟନ୍ତ ଅହିଂସା ପ୍ରତି ଯାହାର ଅଟଳ ବିଶ୍ୱାସ ରହିବ, ସେହିଁ ଦୁନିଆରେ ବିଜୟୀ ।

୨୩ । ଅହିଂସା ଅର୍ଥ ପୂର୍ଣ୍ଣ ନିର୍ଦ୍ଦୋଷିତା । ମନରେ ପ୍ରାଣୀପ୍ରତି ଦୁର୍ଭାବ ନ ଆଣିବା ହେଉଛି ଅହିଂସାର ପରମ ତଥା ଚରମ ଲକ୍ଷ୍ୟ ।

୨୪ । ଅହିଂସା ଏକ ମହାନ ବ୍ରତ ।

୨୫ । ଅହିଂସାର ଫଳ ପ୍ରାପ୍ତିରେ କାଳ ବିଳମ୍ବ ହୁଏ; କିନ୍ତୁ ହିଂସାର ପରିଣାମ ଶୀଘ୍ର ମିଳିଥାଏ ।

୨୬ । ମୋର ଅହିଂସା ପ୍ରତି ଅସୀମ ଶ୍ରଦ୍ଧା ଅଛି ।

୨୭ । ଅହିଂସା ଉପାୟରେ ବିଶ୍ୱ ସଂହତି ଆନୟନ କରାଯାଇ ପାରିବ ।

୨୮ । ଅହିଂସାକୁ ଅବଲମ୍ବନ କରି ତୋଳି ଉଠିଥିବା ସ୍ୱରାଜରେ ଲୋକମାନଙ୍କର ଅଧିକାରଗତ ଜ୍ଞାନ ନ ଆସି କର୍ତ୍ତବ୍ୟ ଜ୍ଞାନ ଆସିବା ଉଚିତ ।

---

## ଅସହଯୋଗ

୧ । ଅସହଯୋଗ ପାଳନ କରିବା ଖଣ୍ଡା ଧାରରେ ଚାଲିବା ସହିତ ସମାନ ।

୨ । ଅସହଯୋଗ ନିଷ୍କ୍ରିୟ ନୁହେଁ, ବରଂ ଏହା ଅଧିକ ସକ୍ରିୟ— ଶାରୀରିକ ପ୍ରତିରୋଧ ହିଂସାଠାରୁ ଅଧିକ କ୍ରିୟାଶୀଳ ।

୩ । ମୁଁ ଯେଉଁ ଅର୍ଥରେ ଅସହଯୋଗ ପ୍ରୟୋଗ କରୁଛି, ତାହା ଅହିଂସାତ୍ମକ ହେବା ଉଚିତ ।

୪ । ଅସହଯୋଗ ହେଉଛି ଅନୁଶାସନ ଓ ଉତ୍ସର୍ଗର କାର୍ଯ୍ୟ । ଏଥିରେ ବିରୋଧୀ ବର୍ଗର ପ୍ରତି ଧୈର୍ଯ୍ୟ ଓ ଆଦର ରଖିବାର ପ୍ରୟୋଜନ ରହିଛି ।

୫ । ଆମ୍ଭମାନଙ୍କର ଅସହଯୋଗ ଭୌତିକ ସଭ୍ୟତା ଓ ତତ୍ସମ୍ବନ୍ଧୀୟ ଲୋଭ ତଥା ଦୁର୍ବଳର ଉତ୍ପୀଡ଼ନ ଉପରେ ପ୍ରତିଷ୍ଠିତ ।

୬ । ଅସହଯୋଗ ହେଉଛି ମୋର କଳ୍ପଦ୍ରୁମ ।

୭ । ଅସହଯୋଗ ମୋ ଜୀବନ ସିଦ୍ଧାନ୍ତର ଅଙ୍ଗ; ତଥାପି ଏହା ସହଯୋଗର ମଙ୍ଗଳାଚରଣ ମାତ୍ର ।

୮ । ମୁଁ କାର୍ଯ୍ୟ କରିବାର ପଦ୍ଧତି ଓ ପ୍ରଣାଳୀରେ ଅସହଯୋଗ କରିଥାଏ । ମନୁଷ୍ୟ ସହିତ ଅସହଯୋଗ ମୋର ଧର୍ମ ନୁହେଁ ।

୯ । ଅସହଯୋଗ ହେଉଛି ଏକ ଅମୋଘ ଅସ୍ତ୍ର ।

୧୦ । ଅସହଯୋଗ ଦ୍ୱାରା ବ୍ୟକ୍ତିଗତ, ସାମାଜିକ ଓ ରାଷ୍ଟ୍ରୀୟ ସମସ୍ୟାର ସମାଧାନ ସହଜରେ ହୋଇପାରେ; କିନ୍ତୁ ଏହାର ପ୍ରୟୋଗ ନିର୍ଭୁଲ ହେବା ଉଚିତ ।

୧୧ । ଅସହଯୋଗ ଶାସକ ଓ ଶାସିତର ଶକ୍ତି ଆକଳନ ପାଇଁ କଷଟି ପଥର ପରି କାମ କରିଥାଏ ।

---

## ଅସ୍ପୃଶ୍ୟତା

୧ । ଅସ୍ପୃଶ୍ୟତା ଆମ ରାଷ୍ଟ୍ରର ହେଉଛି ଏକ ଅଭିଶାପ ।

୨ । ପ୍ରତ୍ୟେକ ହିନ୍ଦୁ ନିଜକୁ ଅସ୍ପୃଶ୍ୟତାରୂପକ ଭୂତ ହାତରୁ ରକ୍ଷା କରନ୍ତୁ ।

୩ । ହରିଜନ ବାଳକମାନଙ୍କୁ ସବର୍ଣ୍ଣ ହିନ୍ଦୁମାନେ ନିଜ ପିଲା ପରି ବ୍ୟବହାର କରିବା ଉଚିତ ।

୪ । ଯେ ମିଥ୍ୟା କହେ ଓ ଖରାପ କାମ କରେ ସେହିଁ ଅସ୍ପୃଶ୍ୟ ।

୫ । ଗ୍ରାମ-ସ୍ୱରାଜରେ ଅସ୍ପୃଶ୍ୟତାର ସ୍ଥାନ ନାହିଁ ।

୬ । ସବୁ ସମୟରେ ଓ ସବୁ ସ୍ଥାନରେ ଆମ୍ଭମାନଙ୍କୁ ଅସ୍ପୃଶ୍ୟତା-ଠାରୁ ଦୂରରେ ରହିବାକୁ ପଡ଼ିବ ।

୭ । ଯେଉଁ ଅସ୍ପୃଶ୍ୟତା ନେଇ କୋଟି କୋଟି ହିନ୍ଦୁ ମାମା ବୋଲଉଛନ୍ତି, ସେମାନଙ୍କ ପ୍ରତି ମୋ'ର ଆନ୍ତରିକ ଘୃଣା ଅଛି ।

୮ । ଅସ୍ପୃଶ୍ୟତା ହିନ୍ଦୁତ୍ୱର କଳଙ୍କ ।

୯ । ଅସ୍ପୃଶ୍ୟତା ହିନ୍ଦୁ ସମାଜ ପାଇଁ ଏକ ଆତ୍ମ ପ୍ରବଞ୍ଚନା ମାତ୍ର । ଧର୍ମ ଓ ନୈତିକତା ଉଭୟ ଦୃଷ୍ଟିରୁ ଏହା ହେୟ ।

୧୦ । ଅସ୍ପୃଶ୍ୟତା ହିନ୍ଦୁତ୍ୱର ଅଙ୍ଗ ନୁହେଁ । ଏହାକୁ ମହାମାରୀ ସହିତ ତୁଳନା କରାଯାଇପାରେ ।

୧୧ । ମୋର ପୁନର୍ଜନ୍ମ ପାଇବାର ଇଚ୍ଛା ନାହିଁ । ଯଦି ମୁଁ ପୁଣି ଥରେ ଜନ୍ମ ହୁଏ ତାହାହେଲେ ଗୋଟିଏ ଅସ୍ପୃଶ୍ୟ ପରିବାରରେ ଜନ୍ମହେବା ପାଇଁ ମୋର ପ୍ରୟାସ, ଯଦ୍ୱାରା ମୁଁ ସେମାନଙ୍କର କଷ୍ଟ ଦୂର କରିବ ।

୧୨ । ଯେଉଁ ବ୍ରହ୍ମତ୍ୱ ଅସ୍ପୃଶ୍ୟତା ସହ୍ୟକରି ପାରେ ନାହିଁ, ତାହା ମୋ ନିକଟରେ ପୂତିଗନ୍ଧମୟ ।

୧୩ । ଗାଁରେ ବାସକରି ହରିଜନଙ୍କଠାରୁ ଅଲଗା ରହାଯାଇ ପାରେନା, କାରଣ ହରିଜନମାନେ ହେଉଛନ୍ତି ସମାଜର ମୂଳଦୁଆ ସ୍ୱରୂପ ।

୧୪ । ଅସ୍ପୃଶ୍ୟତା ହେଉଛି ଏକ ଅସତ୍ୟ । ଅସତ୍ୟର ସମର୍ଥନ ସତ୍ୟରେ କଦାପି କରାଯାଇ ନ ଥାଏ, ଯେପରିକି ସତ୍ୟର ସମର୍ଥନ ଅସତ୍ୟରେ ଅସମ୍ଭବ । ଯଦି ସତ୍ୟ ଅସତ୍ୟ ଦ୍ୱାରା ସମର୍ଥିତ ହୁଏ, ତାହାହେଲେ ଏହା ସତ୍ୟ ହୋଇ ରହେ ନାହିଁ, ଅସତ୍ୟ ହୋଇଯାଏ ।

୧୫ । ହିନ୍ଦୁଧର୍ମ ସହିତ ଅସ୍ପୃଶ୍ୟତା କ୍ଷୀରନୀର ସମ୍ବନ୍ଧ ରକ୍ଷାକରି ଆସି ଅଛି ।

୧୬ । ଯଦି ଆତ୍ମା ଓ ଈଶ୍ୱର ଏକ ତେବେ ଅସ୍ପୃଶ୍ୟ ରହିଲେ କେଉଁଠି ?

୧୭ । ଯେ ପର୍ଯ୍ୟନ୍ତ ମା' ପିଲାର ମଇଳା କାଢ଼ି ହାତଗୋଡ଼ ନ ଧୁଏ କମ୍ବା ନ ଗାଧାଏ, ସେ ପର୍ଯ୍ୟନ୍ତ ସେ ହେଉଛି ଅସ୍ପୃଶ୍ୟା ।

୧୮ । ମୁଁ ଯଦି ଦିନେ ଜଣେ ନିରଙ୍କୁଶ କ୍ଷମତାପନ୍ନ ବ୍ୟକ୍ତି ହୁଅନ୍ତି, ତାହାହେଲେ ମଇଳା ମଧ୍ୟ ସଫା କରିବା ଲାଟସାହେବଙ୍କ କର୍ତ୍ତବ୍ୟର ଅଙ୍ଗୀଭୂତ କରନ୍ତି ।

୧୯ । ଯେଉଁଠି ଅସ୍ପୃଶ୍ୟତା ସମ୍ବନ୍ଧୀୟ ଭାବନା ଅଛି, ସେଠୁ ମାନବିକତା ବିଦାୟ ନେଇଥାଏ । କୌଣସି ବ୍ୟକ୍ତି ଅସ୍ପୃଶ୍ୟତା ସ୍ୱୀକାର କରି ମାନବିକତା ବଜାୟ ରଖିବା ଅସମ୍ଭବ ।

୨୦ । ପିଲାଙ୍କର ମଳମୂତ୍ର ସଫା କରୁଥିବା ମା' ଯେପରି ଆଦରଣୀୟା, ସେହିପରି ସଫେଇ କରୁଥିବା ଲୋକେ, ଯେଉଁମାନଙ୍କୁ ଆମ୍ଭେମାନେ ଅସ୍ପୃଶ୍ୟ କହୁଁ ସେମାନେ ଶ୍ରଦ୍ଧାର ଉପଯୁକ୍ତ ପାତ୍ର ।

୨୧ । ଯେ ପର୍ଯ୍ୟନ୍ତ ଅସ୍ପୃଶ୍ୟତା ରୂପକ ଅଭିଶାପ ହିନ୍ଦୁମାନଙ୍କ ମନରୁ ଅପସରି ନ ଯାଇଛି ସେ ପର୍ଯ୍ୟନ୍ତ ସେମାନେ ଦୁନିଆ ଆଖିରେ ଅସ୍ପୃଶ୍ୟ ହୋଇ ରହିଥିବେ ।

---

## ଅଭୟ

୧ । କେବେ ଓ କେଉଁଠାରେ ଭୟକରିବା ଉଚିତ ନୁହେଁ ।

୨ । ଯେହେତୁ ଏ ଶରୀର ନଶ୍ୱର ଓ ଆତ୍ମା ଅମର, ତେବେ ଭୟ କାହାର ଓ କାହାପାଇଁ ?

୩ । ସବୁବେଳେ ମନ ଅଭୟ ରଖିଲେ ମଣିଷର କେବେ କେହି କିଛି କରିପାରିବେ ନାହିଁ ।

୪ । ସର୍ବେତ୍କୃଷ୍ଟ ଲୋକ ଭଗବାନଙ୍କୁ ମଧ୍ୟ ଅନ୍ତରରୁ ଭୟ କରି ନଥାଏ ।

୫ । ଭଗବାନ ଗୀତାରେ ଦୈବୀ ସମ୍ପତ୍ତି ପ୍ରକରଣରେ ଅଭୟକୁ ସର୍ବ ପ୍ରଥମ ସ୍ଥାନ ଦେଇଅଛନ୍ତି ।

୬ । ଅଭୟ ବିହୁନେ ଅନ୍ୟ ଦୈବୀ ସମ୍ପଦ ମିଳିପାରେ ନାହିଁ ।

୭ । ଅଭୟ—ବ୍ରତ ପୂର୍ଣ୍ଣ ପାଳନ କରିବା ସାଧାରଣ ଲୋକଙ୍କ ପକ୍ଷରେ ଅସମ୍ଭବ; କିନ୍ତୁ ମନରେ ଦୃଢ଼ତା; ଆତ୍ମା ପ୍ରତି ଶ୍ରଦ୍ଧା ଇତ୍ୟାଦି ଆଣିଲେ କ୍ରମେ ଭୟ ନିରାକୃତ ହୋଇଥାଏ ।

୮ । ବାହ୍ୟ ଭୟରୁ ମୁକ୍ତିଲାଭ କଲେ ମଧ୍ୟ, କାମ, କ୍ରୋଧ, ମୋହ ଇତ୍ୟାଦିର ଭୟ ଏଡ଼ିବା କ୍ରମେ କଠିନ ହୋଇପଡ଼େ ।

୯ । ଦେହପ୍ରତି ମମତା ନଛୁଟିବା ଯାଏ ଅଭୟ ମିଳିବା ଅସମ୍ଭବ ।

୧୦ । ଯେ ଭଗବାନଙ୍କଠାରେ ଅଟଳ ବିଶ୍ୱାସ ରଖେ, ତାହାକୁ ସେ ଅଭୟ ଦାନ କରନ୍ତି ।

୧୧ । ମାନସିକ ନିର୍ଭୟତାହିଁ ହେଉଛି ପ୍ରକୃତ ବଳ, ଶାରୀରିକ ସ୍ଥୂଳତା ବଳର ପରିମାପକ ନୁହେଁ ।

୧୨ । ଯେଉଁ ମଣିଷ ଭୟପରବଶ ହୋଇ ଅସତ୍ୟ କହେ ଓ ଅସଦାଚରଣ କରେ, ସେ ହେଉଛି ପଶୁଠାରୁ ହୀନ ।

୧୩ । ନିର୍ଭୟମନା ପ୍ରତି ଶତ୍ରୁର ମଧ୍ୟ ଭୟ ରହିଛି ।

---

## ଆହାର

୧ । ଆହାର ଶରୀରପାଇଁ; କିନ୍ତୁ ଶରୀର ଆହାର ପାଇଁ ନୁହେଁ ।

୨ । ଶରୀରକୁ ବଞ୍ଚାଇରଖିବା ପାଇଁ ଭୋଜନ ଆବଶ୍ୟକ ।

୩ । ପଶୁପକ୍ଷୀ ରସନାତୃପ୍ତି ଓ ଉଦରଭରଣପାଇଁ ଭୋଜନ କରିଥାନ୍ତି । ସେମାନେ ନିଜର ଖାଦ୍ୟପେୟର ବ୍ୟବସ୍ଥା କରନ୍ତି ନାହିଁ । ପ୍ରକୃତି ଯାହାଦିଏ, ତାହାହିଁ ଖା'ନ୍ତି ।

୪ । ସଂସାରରେ ଭୋକରେ ପୀଡ଼ିତ ହୋଇ ଯେତେଲୋକ ମରନ୍ତି, ତାହାଠାରୁ ଅତ୍ୟଧିକ ଭୋଜନକରି ବେଶି ଲୋକ ମରିଥାନ୍ତି ।

୫ । ଭୋଜନ ସାତ୍ତ୍ୱିକ ଓ ସାଧା ହେବା ଦରକାର । ମଦ, ଭାଙ୍ଗ, ଅଫିମ, ତମାଖୁ, ଗୁ, କୋକେନ ଇତ୍ୟାଦି ଭୋଜନର ଅନ୍ତର୍ଭୁକ୍ତ ନୁହେଁ ।

୬ । ଭୋଗ କରିବା ଗୋଟିଏ ରୋଗ । ଖରାପ ଆହାର ମଧ୍ୟ ବେଳେ ବେଳେ ଏହାର କାରଣ ହୋଇଥାଏ ।

୭ । ଅଧିକାଂଶ ଡାକ୍ତର ମତ ଦିଅନ୍ତି ଯେ ଶତକଡ଼ା ୯୯ ଜଣ ବାଧ୍ୟ ହୋଇ ଅଧିକ ଆହାର କରିଥାନ୍ତି ।

୮ । ଆମ୍ଭମାନଙ୍କର ଅଧିକ ଭୋଜନ କରିବା ହେଉଛି ଏକ ଅପରାଧ । ତେଣୁ ଧର୍ମଦୃଷ୍ଟିରୁ ସାମୟିକ ବ୍ରତ ଉପାସନା ରଖାଯାଇ ଅଛି । ସ୍ୱାସ୍ଥ୍ୟ ଦୃଷ୍ଟିରୁ ପକ୍ଷକୁ ଥରେ ବ୍ରତ ଉପାସନା କରିବା ନିହାତି ଦରକାର ।

୯ । ଆହାର ମଣିଷ ଜୀବନର ରକ୍ଷକ ଅଟେ । ତେଣୁ ଏହାକୁ ନିର୍ଣ୍ଣୟ କଲାବେଳେ ବିବେକ ଆରୋପ କରିବା ଦରକାର ।

୧୦ । ଆହାର ମଣିଷ ଜୀବନର ଦୈନିକ ଆବଶ୍ୟକୀୟ ଜିନିଷ । ଏହାର ନିୟନ୍ତ୍ରଣ ସର୍ବାଦୌ ଦରକାର ।

୧୧ । ଆହାର ସୁସମ ଓ ପରିମାଣ ଦୃଷ୍ଟିରୁ ଅତ୍ୟଧିକ ନହେଲେ, କୌଣସି ରୋଗ ସହଜରେ ଆକ୍ରମଣ କରିପାରେ ନାହିଁ ।

୧୨ । ଆହାର ଯଦି ପରିମାଣ ଓ ପ୍ରକାର ଦୃଷ୍ଟିରୁ ଉପଯୁକ୍ତ ନହୁଏ, ତାହାହେଲେ ମଣିଷ ଓ ପଶୁ ମଧ୍ୟରେ ଭିନ୍ନତା ରହିଲା କେଉଁଠି ?

୧୩ । ଯେ ପର୍ଯ୍ୟନ୍ତ ଆହାରରେ ସ୍ୱାଦକୁ ପ୍ରାଧାନ୍ୟ ଦିଆଯାଏ, ସେ ପର୍ଯ୍ୟନ୍ତ ସେଥିରେ ସାତ୍ତ୍ୱିକତା ରହି ପାରେ ନାହିଁ ।

୧୪ । ମଣିଷ ଯେ ପର୍ଯ୍ୟନ୍ତ ନିଜର ଆହାର ସମ୍ବନ୍ଧୀୟ ଆତ୍ମନିର୍ଭର-ଶୀଳତା ହାସଲ ନକରି ପାରିଛି, ସେ ପର୍ଯ୍ୟନ୍ତ ଅନ୍ୟ କୌଣସି କାର୍ଯ୍ୟ କରିବାକୁ ସେ ଯୋଗ୍ୟ ନୁହେଁ ।

---

## ଇଂରାଜୀ

୧ । ଏହା ମୋର ସୁଚିନ୍ତିତ ଅଭିମତ ଯେ ଇଂରାଜୀଶିକ୍ଷା ଇଂରାଜୀ ପଢ଼ୁଆ ଭାରତୀୟମାନଙ୍କୁ ଏକ ପ୍ରକାର ପୌରୁଷହୀନ କରି ପକାଇଅଛି ।

୨ । "ଇଂରାଜୀ ଭାଷା ହେଉଛି ସ୍ୱାଧୀନ ମନୋଭାବ ଓ ସଠିକ ଚିନ୍ତା ଆନୟନ ପାଇଁ ଏକମାତ୍ର ଵ୍ୟବଧାନ"—ଅଧୁନା ଏହା ଭାରତର ହେଉଛି ସବୁଠାରୁ ବଡ଼ କୁସଂସ୍କାର ।

୩ । ଇଂରାଜୀ ଭାଷା ତା'ର ବାଣିଜ୍ୟକ ଓ ରାଜନୈତିକ ମୂଲ୍ୟ ଦୃଷ୍ଟିରୁ ପାଠ୍ୟ ନିର୍ଘଣ୍ଟର ଅଙ୍ଗୀଭୂତ ହେଉ, ଏଥିରେ ମୋ'ର କିଛି ଆପତ୍ତି ନାହିଁ ।

୪ । ଆମ ଦେଶର ଯୁବକମାନେ ଭାବନ୍ତି ଯେ ଇଂରାଜୀ ନପଢ଼ିଲେ ସେମାନେ ସରକାରୀ ଚାକିରୀ ପାଇପାରିବେ ନାହିଁ ଓ ବାଳିକାମାନେ ଭାବନ୍ତି ଯେ ବିବାହ ପାଇଁ ଇଂରାଜୀ ପାଠ ହେଉଛି ଏକ ଅନୁମତି ପତ୍ର ସ୍ୱରୂପ ।

୫ । ଅନେକ ପରିବାର ଅଛନ୍ତି, ଯେଉଁମାନେ କି ଇଂରାଜୀକୁ ନିଜ ମାତୃ ଭାଷାରେ ପରିଣତ କରିସାରିଲେଣି ।

୬ । ସମାଜର ବହୁସ୍ଥଳରେ ଶିକ୍ଷାର ଅର୍ଥ ଇଂରାଜୀ ଜ୍ଞାନ ବୋଲି ଧରାଯାଇଥାଏ । ଏସବୁ ଦାସତ୍ୱ ଓ ଅଧଃପତନର ସଂକେତ ବୋଲି ମୁଁ ଭାବିଥାଏ ।

୭ । ଯେତେବେଳେ ପିତାମାତା ତାଙ୍କ ପୁଅ କନ୍ୟା ଓ ସ୍ୱାମୀ ତା'ର ସ୍ତ୍ରୀ ନିକଟକୁ ନିଜ ମାତୃଭାଷାରେ ନ ଲେଖି ଇଂରାଜୀରେ ଚିଠି ଲେଖିବା କଥା ମୁଁ ଭାବେ, ସେତେବେଳେ ମୋ'ର ଗାତ୍ରଦାହ ହୋଇଥାଏ ।

୮ । ମିଥ୍ୟା, ଅଭିମାନ ଓ ସାମାଜିକ ସୁବିଧା ପାଇଁ ମୋ ଭଉଣୀମାନଙ୍କ ଉପରେ ଇଂରାଜୀ ଭାଷା ଲଦିଦେବାକୁ ମୁଁ ଚାହେଁ ନାହିଁ ।

୯ । ଆମ ଦେଶର ଯେଉଁ ଯୁବକ ଯୁବତୀମାନଙ୍କର ସାହିତ୍ୟିକ ମନୋବୃତ୍ତି ଅଛି, ସେମାନେ ଇଂରାଜୀ ସହିତ ବିଶ୍ୱର ଅନ୍ୟ ଭାଷା ସବୁ ଅଧ୍ୟୟନ କରନ୍ତୁ ।

୧୦ । ଇଂରାଜୀ ଭାଷା ପ୍ରତି ଆମ୍ଭମାନଙ୍କର ପ୍ରବଳ ମୋହ ଥିବାରୁ ପ୍ରାଦେଶିକ ଭାଷାମାନଙ୍କ ପ୍ରତି ଯାହାକର୍ତ୍ତବ୍ୟ ତାହା କରିବାରେ ଆମ୍ଭେମାନେ ତ୍ରୁଟି କରିଥାଏଁ ।

---

## ଈଶ୍ୱର

୧ । ଯେଉଁଠାରେ ପ୍ରେମ ଅଛି, ସେଇଠିହିଁ ଈଶ୍ୱର ବିରାଜମାନ ।

୨ । ଈଶ୍ୱର ହାନି ଲାଭ ସବୁର ହିସାବ ରଖିଥାନ୍ତି । ଦୁନିଆରେ ତାଙ୍କଠାରୁ ବଡ଼ ହିସାବୀ କେହି ନାହାନ୍ତି ।

୩ । ଈଶ୍ୱରଙ୍କୁ ଡରିଲେ ମଣିଷର ଭୟ ରହିବ ନାହିଁ ।

୪ । ମୋପାଇଁ ଈଶ୍ୱର ହେଉଛନ୍ତି ସତ୍ୟ ଓ ପ୍ରେମ । ନିଜର ଅସୀମ ପ୍ରେମ ବଳରେ ସେ ନାସ୍ତିକଙ୍କୁ ମଧ୍ୟ ଜୀବିତ ରଖନ୍ତି ।

୫ । ପଇସା ଦେଇ ଭଗବାନଙ୍କୁ ନଦେଖିବା, ଭଗବାନଙ୍କୁ ଭୁଲିଯିବା ସହିତ ସମାନ ।

୬ । ଯେଉଁ ପ୍ରଭୁ ଲକ୍ଷ ଲକ୍ଷ ଶରଣାର୍ଥୀଙ୍କୁ ସାହାଯ୍ୟ କରୁଛନ୍ତି ସେ ପ୍ରଭୁ ତୁମ୍ଭଙ୍କୁ କଦାପି ଛାଡ଼ିଯିବେ ନାହିଁ ।

୭ । ଯେ ଈଶ୍ୱରଙ୍କୁ ନ୍ୟାୟୋଚିତ କାର୍ଯ୍ୟରେ ଭୟକରେ ତାହାର ହୃଦୟ କଦାପି ପ୍ରଫୁଲ୍ଲ ରହେନା ।

୮ । ମୁଁ ସେହି ପରମାତ୍ମାଙ୍କ ବ୍ୟତୀତ କୌଣସି ଠାକୁରଙ୍କୁ ମାନେନାହିଁ ।

୯ । ଯେଉଁ ଲୋକ ସବୁକାର୍ଯ୍ୟ କରିପାରେ ବୋଲି ମିଥ୍ୟାଭିମାନ-କରେ, ଈଶ୍ୱର ତାହାର ଦମ୍ଭ ଅଚିରେ ଚୂର୍ଣ୍ଣ କରିଦିଅନ୍ତି ।

୧୦ । ଆମ ଗାଡ଼ିର ଚାଳକ ହେଉଛନ୍ତି ଈଶ୍ୱର । ଏଥିରେ ବସିବାକୁ ଯେ ପର୍ଯ୍ୟନ୍ତ ଆମର ଶ୍ରଦ୍ଧା ରହିବ, ସେ ପର୍ଯ୍ୟନ୍ତ ଏହି ଗାଡ଼ି ଅଚଳ ହେବନାହିଁ ।

୧୧ । ଈଶ୍ୱର ଆଲୋକ, ଅନ୍ଧକାର ନୁହନ୍ତି; ସେ ପ୍ରେମ, ଘୃଣା ନୁହନ୍ତି; ସେ ସତ୍ୟ ଅସତ୍ୟ ନୁହନ୍ତି ।

୧୨ । ଯାହାକୁ ଈଶ୍ୱର ବଞ୍ଚାଇବାକୁ ଚାହିଁବେ, ତାକୁ କୌଣସି ଶକ୍ତି ମାରିପାରିବ ନାହିଁ ।

୧୩ । ଈଶ୍ୱର ମଣିଷ ମନରେ ସାହସ ଦିଅନ୍ତି ଓ ଅସତ୍‌ପ୍ରବୃତ୍ତିର ନିରାକରଣ କରନ୍ତି ।

୧୪ । ଯାହାର ଚିତ୍ତ ଈଶ୍ୱରଙ୍କର ପବିତ୍ର କାର୍ଯ୍ୟରେ ତନ୍ମୟୁକ୍ତ, ତା ନିକଟରେ ଅସ୍ପଷ୍ଟ ସ୍ପଷ୍ଟତା ଲାଭକରେ ।

୧୫ । ଅସଂଖ୍ୟ ଦୁର୍ଭିକ୍ଷ ପ୍ରପିଡ଼ୀତ ଲୋକଙ୍କୁ ଖାଇବାକୁ ଦେଲେ, ସେମାନେ ତୁମକୁ ତାଙ୍କର ଈଶ୍ବର ବୋଲି ମାନିବେ ।

୧୬ । ଯେତେବେଳେ ମଣିଷ ନିଜକୁ ଧୂଳିକଣାଠାରୁ ଆହୁରି ନ୍ୟୁନ ମନେକରେ, ସେତେବେଳେ ଈଶ୍ବର ତାକୁ ସାହାଯ୍ୟ କରିଥାନ୍ତି ।

୧୭ । ଯେ ଭଗବତ୍‌ଚିନ୍ତା ମନରେ ସବୁବେଳେ ରଖେ, ସେ କେବେହେଲେ ପଥଭ୍ରଷ୍ଟ ହୁଏ ନାହିଁ ।

୧୮ । ମଣିଷର କର୍ତ୍ତବ୍ୟ ପରମାତ୍ମା ଓ ତାଙ୍କଶକ୍ତିକୁ ପୂର୍ଣ୍ଣତା ପ୍ରଦାନକରେ ଓ ବିପରୀତ ପ୍ରବୃତ୍ତିଗୁଡ଼ିକର ପ୍ରଶମନକରେ ।

୧୯ । ଈଶ୍ବର ମୂର୍ଖକୁ ବୁଦ୍ଧିଦାନ କରିଥାନ୍ତି ।

୨୦ । ଯେହେତୁ ଈଶ୍ବର ହେଉଛନ୍ତି ଆମର ରକ୍ଷକ, ଘାତୁକ ଯେତେ ବଳବାନ୍ ହେଲେ ସୁଦ୍ଧା ମାରିପାରେ ନାହିଁ ।

୨୧ । ଯେ ଜାଗ୍ରତ ରହେ ଓ ପ୍ରାର୍ଥନାକରେ ତାଙ୍କୁ ଈଶ୍ବର ବଡ଼ ବଡ଼ କାମ ଓ ଜମିଦାରୀ ଜୁଟାଇ ଦେଇଥାନ୍ତି ।

୨୨ । ମୁଁ ଏ ସଂସାର ସାଗରରେ ସାମାନ୍ୟ ବୁଦ୍‌ବୁଦ୍‌ପରି, ମନ୍ଦ ପ୍ରବୃତ୍ତିମାନଙ୍କର ଆକ୍ରମଣରୁ ସେହି ମୋତେ ରକ୍ଷା କରି ପାରିବେ ।

୨୩ । ଯେ ସତ୍ୟ ଜାଣେ ଓ ମନପ୍ରାଣ ଦେଇ ଏହାର ଆଚରଣ କରେ, ସେ ପରମେଶ୍ବରଙ୍କୁ ଚିହ୍ନିପାରେ ।

୨୪ । ଅଶୁଦ୍ଧ ଶରୀର ଓ ଅଶୁଦ୍ଧ ମସ୍ତିଷ୍କରେ ଆମ୍ଭେମାନେ ପ୍ରଭୁଙ୍କର ଆଶୀର୍ବାଦ ପାଇବା ଅସମ୍ଭବ ।

୨୫ । ବର୍ତ୍ତମାନ ପାଇଁ ଆମ୍ଭେମାନେ ଚିନ୍ତାକଲେ ଭବିଷ୍ୟତ ପାଇଁ ଭଗବାନ ଚିନ୍ତାକରିବେ ।

୨୬ । ବୁଦ୍ଧିମାନ୍, ମୂର୍ଖ, ପାପୀ, ଧାର୍ମିକ ସମସ୍ତଙ୍କର ଈଶ୍ବର ଏକ ।

୨୭ । ଯେ କୌଣସି କ୍ଷେତ୍ରରେ ଈଶ୍ୱରଙ୍କ ଉପରେ ଭରସାରଖି ମଣିଷର ଯତ୍ନକରିବା ଉଚିତ ।

୨୮ । ମାନବ ସମାଜର ସେବାଦ୍ୱାରା ଈଶ୍ୱରଙ୍କ ସାକ୍ଷାତ ପାଇଁ ମୁଁ ଚେଷ୍ଟା କରୁଅଛି; କାରଣ ମୁଁ ଜାଣେ ଯେ ଈଶ୍ୱର ସ୍ୱର୍ଗ କିମ୍ବା ପାତାଳରେ ନାହାନ୍ତି, ସେ ସମସ୍ତଙ୍କ ହୃଦୟରେ ଅଛନ୍ତି ।

୨୯ । ଭଗବାନ ସମସ୍ତଙ୍କୁ ଶରଣ ଦେଇଥାନ୍ତି ।

୩୦ । ଈଶ୍ୱର କାବା କିମ୍ବା କାଶୀରେ ନାହାନ୍ତି । ସେ ସର୍ବବ୍ୟାପ୍ତ-- ସମସ୍ତଙ୍କ ହୃଦୟରେ ବିରାଜିତ ।

୩୧ । ଈଶ୍ୱରହିଁ ସତ୍ୟ ।

୩୨ । ନିଃସହାୟର ସହାୟହିଁ ଭଗବାନ ।

୩୩ । ମୂକ ଜନତାର ହୃଦୟରେ ମୁଁ ଭଗବାନଙ୍କର ସନ୍ଧାନ ପାଇଥାଏ ।

୩୪ । ଭଗବାନ ନିଜେ ହେଉଛନ୍ତି ବିଧି ଓ ବିଧାତା ।

୩୫ । ମଣିଷ ବିଧାତାଙ୍କ ବିଧି ପୂର୍ଣ୍ଣ ମାତ୍ରାରେ କଦାପି ଜାଣିପାରେ ନାହିଁ ।

୩୬ । ଈଶ୍ୱର ହେଉଛନ୍ତି ମଙ୍ଗଳମୟ । ସେ ଦୁଷ୍ଟଙ୍କୁ ସୀମା ଲଙ୍ଘନ କରିବାକୁ ବାଧା ଦିଅନ୍ତି ।

୩୭ । ଈଶ୍ୱର କେବେ ବିଧାସଲଟ ଦଣ୍ଡ ଦିଅନ୍ତି ନାହିଁ ।

୩୮ । ଈଶ୍ୱରଙ୍କ ସତ୍ତା ଅନୁଭବ କରିବାକୁ ହେଲେ, ପୃଥିବୀର ସମସ୍ତଜୀବଙ୍କୁ ସମାନ ଦୃଷ୍ଟିରେ ଦେଖିବାହିଁ ଆମର କର୍ତ୍ତବ୍ୟ ।

୩୯ । ଭଗବାନଙ୍କର ଅଶେଷ ନାମ ନାହିଁ, ବରଂ ସେ ହେଉଛନ୍ତି ଅନାମ ।

୪୦ । ଭଗବତ୍ ଈଶ୍ବାସ ସତ୍ୟ ଉପରେ ପ୍ରତିଷ୍ଠିତ ହେବା ଉଚିତ ।

୪୧ । ଭଗବାନଙ୍କର ଦୟା ଓ ଆବିର୍ଭାବ କୌଣସି ଗୋଷ୍ଠୀ କିମ୍ବା ଜାତିର ଏକଚ୍ଛତ୍ରବାଦ ନୁହେଁ ।

୪୨ । ଆମ୍ଭେମାନେ ଈଶ୍ବରଙ୍କୁ ଭୟକଲେ, ମଣିଷ ପ୍ରତି ଭୟ ଆମର ଚାଲିଯିବ ।

୪୩ । ଭଗବତ୍ ବିଶ୍ବାସର ଅଭାବଯୋଗୁଁ ଆମ୍ଭେମାନେ ମଣିଷକୁ ଭୟ କରିଥାଉଁ ।

୪୪ । ମୁଁ ସତ୍ୟାଗ୍ରହୀ ସ୍ବଭାବରେ ଭଗବାନଙ୍କ ବ୍ୟତୀତ ଅନ୍ୟ କାହାର ଆଶ୍ରୟ ନେଇ ନଥାଏ ।

୪୫ । ଈଶ୍ବରଙ୍କ ପ୍ରତି ପ୍ରଗାଢ଼ ଅନୁରକ୍ତିର ଅଭାବ, ସବୁ ଦୁଷ୍କର୍ମର ମୂଳ କାରଣ ।

୪୬ । ପ୍ରକୃତ ଈଶ୍ବରଙ୍କ ଭକ୍ତର ଖଡ୍ଗ ଧାରଣପାଇଁ ଅସୀମ କ୍ଷମତା ରହିଛି; କିନ୍ତୁ ସେ ତାହା ଧାରଣ କରେନାହିଁ । ଯେହେତୁ ସେ ଜାଣେ ଯେ ଦୁନିଆଁରେ ସମସ୍ତେ ହେଉଛନ୍ତି ଈଶ୍ବରଙ୍କ ପ୍ରତିମୂର୍ତ୍ତି ।

୪୭ । ମଣିଷ ଯେ କି ନଦୀ, ଜଙ୍ଗଲ ଇତ୍ୟାଦି ସୃଷ୍ଟି କରିବାରେ ଅକ୍ଷମ, ସେ କିପରି ଭଗବାନଙ୍କୁ ସୃଷ୍ଟି କରି ପାରିବ ?

୪୮ । ମୁଁ ସମସ୍ତ ପ୍ରଶଂସା ଓ ନିନ୍ଦା ଭଗବାନଙ୍କ ପାଦତଳେ ବାଢ଼ି ଦେଇ କର୍ମ କରିଥାଏ ।

୪୯ । ମୁଁ ଭଗବାନଙ୍କ ଦୂତ ବୋଲି କେବେ ହେଲେ କହି ନାହିଁ ।

୫୦ । ଗୋଟିଏ ଦୁର୍ଭିକ୍ଷ ପ୍ରପିଡ଼ୀତ ଆଳସ୍ୟପରାୟଣ ଜାତି ନିକଟରେ କର୍ମ ଓ ପ୍ରଚୁର ପାରିଶ୍ରମିକହିଁ ଭଗବାନ ।

୫୧ । ଆଜ ଆମ ପକ୍ଷରେ ଯାହା ଅସମ୍ଭବ, କାଲି ଭଗବାନ ତାହା ସମ୍ଭବ କରିବେ ।

୫୨ । ବିଶ୍ୱ ଘଟଣାରେହିଁ ଭଗବାନଙ୍କ ପ୍ରତି ଭକ୍ତିର ସୂଚନା ।

---

## ଉଚ୍ଚ ଶିକ୍ଷା

୧ । ଉଚ୍ଚ ଶିକ୍ଷାର ମାଧ୍ୟମ ସ୍ୱଦେଶୀ ଭାଷା ହେବାଦ୍ୱାରା, ରାଷ୍ଟ୍ରର ଅକଳନ୍ତ ବୌଦ୍ଧିକ ଓ ନୈତିକ ହାନି ହେଉଅଛି ।

୨ । ମୁଁ କଲେଜ ଶିକ୍ଷାକୁ ରାଷ୍ଟ୍ରର ଆବଶ୍ୟକତାର ଅନୁକୂଳ କରିବାକୁ ଚାହେଁ ।

୩ । ମୁଁ ଉଚ୍ଚ ଶିକ୍ଷାର ବିରୋଧି ନୁହେଁ ; କିନ୍ତୁ ଯେଉଁ ପ୍ରକାର ଶିକ୍ଷା ଏ ଦେଶରେ ପ୍ରଚଳିତ ହେଉଅଛି, ସେଥିରେ ଅସଂଖ୍ୟ ତ୍ରୁଟି ରହିଅଛି ।

୪ । ଅନେକ ଲୋକ ଉଚ୍ଚ ଶିକ୍ଷାର ସଦୁପଯୋଗ କରିପାରୁ ନାହାନ୍ତି, ତାହା ବୋଲି ଉଚ୍ଚଶିକ୍ଷା ଯେ ଦରକାର ନାହିଁ, ଏପରି କହିବା ଭୁଲ ।

୫ । ଯେଉଁ ଶିକ୍ଷା ପାଇବା ଦ୍ୱାରା ମଣିଷ ସ୍ୱାବଲମ୍ବୀ, ପରୋପକାରୀ, ସେବାପରାୟଣ ଓ କାର୍ଯ୍ୟତତ୍ପର ହୁଏ, ତାହାକୁ ମୁଁ ଉଚ୍ଚଶିକ୍ଷା କହିଥାଏ ।

୬ । ମୋର ଦୃଢ଼ ବିଶ୍ୱାସ ଯେ ଆଜକାଲି ଆମ କଲେଜମାନଙ୍କରେ ଯେଉଁ ଶିକ୍ଷା ଦିଆଯାଉଅଛି, ତାହା କେବଳ ଦେଶର ବେକାର ସମସ୍ୟା ବଢ଼ାଇବା ପାଇଁ ।

---

## ଉପକାର

୧ । ଉପକାର କଦାପି ବ୍ୟର୍ଥ ହୁଏନା ।

୨ । ଉପକାର କଲେ ମଣିଷର ଆତ୍ମା ଉନ୍ନତ ଓ ପ୍ରଫୁଲ୍ଲିତ ହୁଏ ।

୩ । ଉପକାର କରି କୌଣସି ଆଶାରଖିବା ନିଜର ସତ୍‌କର୍ମ ଉପରେ ଆଞ୍ଚ ଆଣିବା ଛଡ଼ା ଅନ୍ୟ କିଛି ନୁହେଁ ।

୪ । ଉପକାର କରିବା ପାଇଁ ମନୋବୃତ୍ତି ପୋଷଣ କରୁଥିବା ଲୋକ ସଂସାରରେ କେବେ ଦୁଃଖୀ ହୋଇପାରେ ନାହିଁ ।

୫ । ଉପକାର କରୁଥିବା ଲୋକ ମନରେ ସ୍ୱାର୍ଥର ଭାବନା ଆସିବା ଉଚିତ ନୁହେଁ ।

୬ । ଉପକାରୀର ଧନସମ୍ପତ୍ତି କଦାପି ହ୍ରାସ ପାଏ ନାହିଁ ବରଂ ବଢ଼ିବାକୁ ଲାଗେ ।

୭ । ଯାହାର ଉପକାର କରିବାର ମନୋବୃତ୍ତି ନାହିଁ, ତାହାର ନିଜକୁ ମଣିଷ ବୋଲି ପରିଚୟ ଦେବାର ଅଧିକାର ନାହିଁ ।

---

## ଉପବାସ

୧ । ଉପବାସ ହେଉଛି ଗୋଟିଏ ଆମୋଘଅସ୍ତ୍ର । ଏହାକୁ ଅନ୍ୟର ତରବାରୀ ସହିତ ସମାନ କରାଯାଇ ପାରେ ।

୨ । ଉପବାସକୁ ଧମକ ରୂପରେ ବ୍ୟବହାର କରିବା ଉଚିତ ନୁହେଁ ।

୩ । ପ୍ରାର୍ଥନାସହିତ ଉପବାସ କରିବା ଦ୍ୱାରା ଆତ୍ମ ସଂଯମର ସୁଫଳ ପ୍ରାପ୍ତି ହୋଇଥାଏ ।

୪ । ସ୍ୱାସ୍ଥ୍ୟ ଦୃଷ୍ଟିରୁ ମଧ୍ୟ ଉପବାସ କରାଯାଇ ଥାଏ । ସାମାଜିକ ସଂସ୍କାର ଆଣିଲେ ଉପବାସର ମହତ୍ତ୍ୱ ଅଧିକ

ପ୍ରତିପାଦିତ ହୋଇଥାଏ । ଅହିଂସାର ପୂଜାରୀ ନ ହେଲେ ଏପରି ସଂସ୍କାର ଆଣିବା ସହଜ ନୁହେଁ ।

୫ । ଏହାଦ୍ୱାରା ଶାରୀରିକ ଓ ଆତ୍ମିକ ଦୋଷ ସଂଶୋଧିତ ହୋଇଥାଏ ।

୬ । ଅନଶନ ହଠାତ୍ ଆରମ୍ଭ କରିବା ଉଚିତ ନୁହେଁ । ଏହାର ବିଧିବିଧାନ ହୃଦୟଙ୍ଗମ କରି ଓ ଉପଯୋଗିତା-ପ୍ରତି ଧ୍ୟାନ ଦେଲା ପରେ ଏହା ଆରମ୍ଭ କରାଯିବା ଉଚିତ ।

୭ । ଉପବାସ ଶାରୀରିକ ଓ ଆତ୍ମିକ ଶୁଦ୍ଧି ନିମିତ୍ତ ଆବଶ୍ୟକୀୟ ଅବଲମ୍ବନ ।

୮ । ଠିକ୍ ନିୟମାନୁଯାୟୀ ଉପବାସକଲେ ଇନ୍ଦ୍ରିୟମାନଙ୍କୁ ଦମନ କରାଯାଇ ପାରେ ଓ ଆତ୍ମା ସେମାନଙ୍କ କବଳରୁ ମୁକ୍ତ ହୋଇପାରେ ।

୯ । ସ୍ୱାର୍ଥରହିତ ଉଦ୍ଦେଶ୍ୟ ପାଇଁ ଅନଶନ କରାଯାଇ ପାରେ ।

୧୦ । ଉପବାସ ସତ୍ୟ-ଶୋଧନ ପାଇଁ ଏକ ସାଧନା ଓ ଶରୀର ଶୋଧନ ପାଇଁ ଏକ ଉପାୟ ।

୧୧ । ଅନଶନ ମନ ଓ ଶରୀରର ଶୁଦ୍ଧି ପାଇଁ କରାଯାଇ ଥାଏ । ଏହା ସତ୍ୟାଗ୍ରହ ଶାସ୍ତ୍ରର ଅନୁପମ ଓ ଅମୋଘ ଅସ୍ତ୍ର ଅଟେ ।

୧୨ । ବ୍ୟକ୍ତିଗତ ସ୍ୱାର୍ଥରକ୍ଷା ମୂଳକ ଲକ୍ଷ୍ୟରଖି ଅନଶନ କରିବା ଉଚିତ ନୁହେଁ ।

---

## କର୍ମ

୧ । ନିର୍ଭୟ ଚିତ୍ତରେ କର୍ମ କରିଯାଅ । କାମନା ବନ୍ଧନରେ କର୍ମ- ବର୍ଷକରେ ଦୃଷ୍ଟି ହେବନାହିଁ । ନିଜେ ଦୃଢ଼, ଅହିଂସା ଓ

ସ୍ୱାର୍ଥତ୍ୟାଗୀ ହୋଇ ସତ୍ୟର ପ୍ରତିଷ୍ଠା ପାଇଁ ଆତ୍ମବିଶ୍ୱାସ ରଖ । ଦେଖିବ, ତୁମର ଅଜ୍ଞାତରେ ଦେବାଶିଷ କର୍ମଜୀବନରେ ଝରିପଡ଼ିବ ।

୨ । ତୁମ ବିଷୟରେ ଭଲ ମନ୍ଦ ଲୋକେ କଣ କହୁଛନ୍ତି, ସେଥିରେ ବିଚଳିତ ହୁଅ ନାହିଁ । ନିଜର କର୍ମ ନିଜେ କରିଯାଅ । ଯେ ସୁକର୍ମ କରେ, ତାକୁ କେବେ ମନ୍ଦ ଫଳ ମିଳେ ନାହିଁ ।

୩ । ସତ୍‌କର୍ମରେ ଜୀବନ ଅତିବାହିତ ହେଲେ ଅମୃତମୟ ମୃତ୍ୟୁର ସନ୍ଧାନ ମିଳିଥାଏ ।

୪ । ସଂସାରରେ ଏପରି କୌଣସିଲୋକ ଜନ୍ମିନାହିଁ, ଯାହା ତାଙ୍କର କର୍ମ ନାହିଁ । କର୍ମରେହିଁ ଜୀବନରେ ବିସ୍ତୃତ ।



## କଳା

୧ । ସମସ୍ତ କଳା ଆନ୍ତରିକ ବିକାଶର ଆବିର୍ଭାବ ମାତ୍ର ।

୨ । ଯେଉଁ କଳା ଆତ୍ମାକୁ ଆତ୍ମଦର୍ଶନ କରିବାର ଶିକ୍ଷା ଦିଏ ନାହିଁ, ତାହା ପ୍ରକୃତ କଳା ନୁହେଁ ।

୩ । ଯେଉଁ ମନୁଷ୍ୟ ବାହ୍ୟଦର୍ଶୀ ନ ହୋଇ ଅନ୍ତର୍ଦର୍ଶୀ ହୁଏ, ସେ ପ୍ରକୃତ କଳାକାର ।

୪ । ସର୍ବୋତ୍କୃଷ୍ଟ କଳା ବ୍ୟକ୍ତି ଭୋଗ୍ୟ ହୁଏ ନାହିଁ । ଯଦି କଳା ଅଧିକରୁ ଅଧିକ ମୁକ୍ତହୁଏ, ତେବେ ତାହା ସର୍ବଭୋଗ୍ୟ ହୋଇ ପଡ଼େ । ଏହି ନିର୍ଦୋଷ ସର୍ବଭୋଗ୍ୟ କଳା ମଣିଷର ଆଧ୍ୟାତ୍ମିକ ବିକାଶ ପାଇଁ ସବୁଠାରୁ ବେଶି ସାହାଯ୍ୟ କରିଥାଏ ।

୫ । ଇନ୍ଦ୍ରିୟଜ୍ଞାନ ଉପରେ ପର୍ଯ୍ୟବସିତ କଳାରେ ଯେତିକି ପରିମାଣରେ ଆତ୍ମା ରହେ, ତାହା ସେତିକି ପରିମାଣରେ ଅମୃତତ୍ୱ ଲାଭକରେ ।

୬ । ଯେଉଁଥିରେ ଆତ୍ମାର ଅଭାବ ରହିଛି, ତାହା କଳାନୁହେଁ । କ୍ଷଣଭଙ୍ଗୁର କୃତି ମାତ୍ର ।

୭ । ଜୀବନ ହେଉଛି ଏକ ଶ୍ରେଷ୍ଠତମ କଳାତ୍ମକ ସୃଷ୍ଟି । ମୁଁ ଅବବୋଧ କରୁଛି ଯେ ଯେଉଁ ଲୋକ ନିଖୁଣ୍ତଭାବେ ଜୀବନ-ଯାପନ କରି ଜାଣେ, ସେ ହେଉଛି ଉପଯୁକ୍ତ କଳାକାର ।

୮ । ଉନ୍ନତ ତଥା ପରିମାର୍ଜିତ ଜୀବନର ଭୂମିକା ବିନା କଳା କୌଣସି ପ୍ରକାରେ ରୂପାୟିତ ହୋଇପାରେ ନାହିଁ ।

୯ । ଜୀବନକୁ ଉନ୍ନତ କରିବା ହେଉଛି କଳାର ଲକ୍ଷ୍ୟ ।

୧୦ । ଜୀବନହିଁ କଳା ।

୧୧ । କଳା ଜୀବନର ହେଉଛି ପରିପୂରକ, ଜୀବନର ସେବାହିଁ ଏହାର କାମ ।

୧୨ । କଳା ବିଶୃଙ୍ଖଳିତ ସଦା ଜାଗ୍ରତ ରହିବା ଉଚିତ ।

୧୩ । କଲ୍ୟାଣକାରୀ କଳାର ସତ୍ତା ମୁଁ ସ୍ୱୀକାର କରିଥାଏ ।

୧୪ । ପ୍ରତିଷ୍ଠିତ କଳାକାରମାନେ ସେମାନଙ୍କର କଳାକୁ ମଧୁର ଓ ତାହାର କଳେବରରେ ରୂପରେଖ ଦେଇ ସାର୍ବଜନୀନ କରିପାରି ଅଛନ୍ତି ।

୧୫ । କଳାକାର ଯଦି କଳାକୁ କଲ୍ୟାଣକାରୀ ଓ ଜନସାଧାରଣଙ୍କର ବୋଧଗମ୍ୟ କରିପାରେ ତାହାହେଲେ ଜୀବନରେ ସେହି-କଳାର ସ୍ଥାନ ଅଛି ।

୧୬ । ଭାରତୀୟ କଳା କଳ୍ପନା ପରିବୃତ; କିନ୍ତୁ ପାଶ୍ଚାତ୍ୟ କଳା ପ୍ରକୃତିର ଅନୁକରଣ ମାତ୍ର ।

୧୭ । ଜୀବନକୁ ଉଦ୍ଧାର କରିବାର କ୍ଷମତା କଳାରେ ରହିବା ଉଚିତ ।

୧୮ । କେବଳ ନୟନାଭିରାମ ଓ କର୍ଣ୍ଣରସାୟନ ହେଲେ ଉଚ୍ଚାଙ୍ଗକଳା ହୋଇ ପାରେ ନାହିଁ, ଏହା ଆମ୍ଭାକୁ ପରିଣାମଦର୍ଶୀ ଓ ପରିତୁଷ୍ଟ କରିବା ଉଚିତ ।

୧୯ । କଳା ମଣିଷ ପ୍ରାଣର ହେଉଛି ଏକ ଦୈବୀ ଅଭିବ୍ୟକ୍ତି ।

୨୦ । ଯେଉଁ କଳା ଜନତାପାଇଁ ଉଦ୍ଦିଷ୍ଟ ନ ହୋଇ ଭାଗ୍ୟବାନ-ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ, ତାହାକୁ ନିରୁପଯୋଗୀ କଳା କୁହାଯାଏ ।

୨୧ । କଳାର ସୃଷ୍ଟି କଳାପାଇଁ—କହିବା ଭୁଲ । ଏହା ଜୀବନପାଇଁ ସୃଷ୍ଟ ହେବା ଉଚିତ ।



## କାବ୍ୟ

୧ । କାବ୍ୟ ମାନବିକ ବିକାଶ ପାଇଁ ନିଶ୍ଚୟ କାର୍ଯ୍ୟ କରିବ ।

୨ । କବିର କାବ୍ୟ କେବଳ କଳ୍ପନାପ୍ରଧାନ ହେବା ଉଚିତ ନୁହେଁ ।

୩ । କାବ୍ୟ ସର୍ବଦା କବିର ଅଗ୍ରଗାମୀ ।

୪ । କାବ୍ୟରେ ଯେଉଁ ସତ୍ୟ କବି ତନ୍ମୟସହକାରେ ଉଚ୍ଚାରଣ କରିଥାଏ, ସେହିସତ୍ୟ ତା ଜୀବନରେ ତିଳେମାତ୍ର ସ୍ଥାନ ପାଏନାହିଁ ।

୫ । ଆମ ଅନ୍ତରର ସୁପ୍ତ ଭାବନାଗୁଡ଼ିକୁ ଜାଗ୍ରତ କରିବାର ସାମର୍ଥ୍ୟ ଯାହାର ଅଛି ସେ ହେଉଛି କବି ।

୬ । ଯେଉଁ କାବ୍ୟ ଓ ସାହିତ୍ୟ ସର୍ବବୋଧ୍ୟ, ତାହା ଚିରନ୍ତନ ।

୭ । ଯେ କାବ୍ୟରୁ ଆନନ୍ଦ ଆହରଣ କରିପାରେ, ତା ପକ୍ଷରେ ଅନ୍ୟ ଆନନ୍ଦ ତୁଚ୍ଛ ।

୮ । କାବ୍ୟର ଲକ୍ଷ୍ୟ କେବଳ ମନୋରଞ୍ଜନ .. ନ ହୋଇ ହିତସମ୍ବର୍ଦ୍ଧନ ଓ ଚରିତ୍ରନିର୍ମାଣ ହେବା ଉଚିତ ।

୯ । ଯେଉଁ କାବ୍ୟଦ୍ୱାରା ମଣିଷ ଜୀବନ ଶାଳୀନତା ସମ୍ପନ୍ନ ହୁଏନାହିଁ ଓ ଯେଉଁଥିରେ ନୂତନ ଆଶାର ସନ୍ଧାନ ମିଳେନାହିଁ, ତାହା କଦାପି କଳାତ୍ମକ ନୁହେଁ ।



## କ୍ରୋଧ

୧ । କ୍ରୋଧ ହେଉଛି ପାପର ମୂଳ ।

୨ । କ୍ରୋଧର ପରିଣାମ ସର୍ବଦା ଭୟଙ୍କର ।

୩ । ଯେ ମାନବ ସମାଜର ସେବାକରେ ସେ କାହାପ୍ରତି କ୍ରୋଧ କରିବା ଉଚିତ ନୁହେଁ ।

୪ । ଆମ୍ଭେମାନେ ବହୁ ଜନ୍ତୁଙ୍କୁ ହତ୍ୟା କରିଥାଉଁ; କିନ୍ତୁ ପ୍ରଥମେ ଆମ ଅନ୍ତରରେ ଥିବା କ୍ରୋଧକୁ ହତ୍ୟା କରିବା ଉଚିତ ।

୫ । ଶାନ୍ତିହିଁ ହେଉଛି କ୍ରୋଧର ପରମ ପ୍ରତିକାର ।

୬ । କ୍ରୋଧ ଏପରି ଗୋଟିଏ ରୋଗ, ଯାହାକୁ କି କ୍ଷଣିକ ପାଗଳାମି କହିଲେ ଅତ୍ୟୁକ୍ତି ହେବନାହିଁ ।

୭ । ଯେ କ୍ରୋଧକୁ ଜୟକରି ପାରେନାହିଁ ସେ ଉପଯୁକ୍ତ ସତ୍ୟାଗ୍ରହୀ ନୁହେଁ ।

୮ । କ୍ରୋଧହୀନ ମଣିଷ ଦେବତା ସହିତ ସମାନ ।

୯ । କ୍ରୋଧ ମନୁଷ୍ୟକୁ ଲଜ୍ଜାହୀନ କରେ ।

୧୦ । ମଣିଷ ମନରେ କ୍ରୋଧାଗ୍ନି ଜଳିଲେ ସମ୍ପର୍କିୟ ଲୋକଙ୍କର ତାହା କ୍ଷତି କରିଥାଏ ।

୧୧ । କ୍ରୋଧ ରୂପକ ଦାବାନଳ ଯାହା ମନରେ ଜାତହୁଏ, ତାହାର ସର୍ବନାଶ ହୋଇଥାଏ ।

୧୨ । ମନରେ ଅହିଂସା ଆଣିଲେ କ୍ରୋଧ ପ୍ରାୟ କ୍ଷତି କରିପାରେ ନାହିଁ ।



## କୃଷକ

୧ । ଯଦି ଗଣତାନ୍ତ୍ରିକ ସୂତ୍ରକ ଅହିଂସା ଉପାୟରେ ହାସଲ କରାଯାଏ, ତାହାହେଲେ କୃଷକମାନେ ଅନ୍ୟାନ୍ୟ ଅଧିକାର ସହିତ ରାଜନୈତିକ ଅଧିକାର ମଧ୍ୟ ପାଇବେ ।

୨ । ଯଦି ସରକାର ଓ ଜନସାଧାରଣଙ୍କ ମଧ୍ୟରେ ମିଳାମିଶା ହୋଇ ଅଧିକାରର ସୀମା ନିର୍ଦ୍ଧାରଣ କରାଯାଏ, ତାହାହେଲେ କୃଷକମାନଙ୍କୁ ଅପେକ୍ଷାକୃତ ଅଧିକ କ୍ଷମତା ଦିଆଯିବ ।

୩ । ଯଦି ଶାସକ ଗୋଷ୍ଠୀ କୃଷକମାନଙ୍କର ସୁଖ ସ୍ୱାଚ୍ଛନ୍ଦ ପ୍ରତି ଦୃଷ୍ଟି ନ ଦିଅନ୍ତି, ତାହାହେଲେ ଅସହଯୋଗକୁ ତାହାର ମହୌଷଧି ରୂପେ ଗ୍ରହଣ କରାଯିବ ।

୪ । ଦେଶରେ କୃଷକ ଓ ଭୂମିହୀନ ମଜୁରିଆଙ୍କୁ ସବୁପ୍ରକାର ସୁବିଧା ମିଳିବା ଉଚିତ ।

୫ । ଘରଖାସ୍ କୃଷକମାନଙ୍କ ପାଇଁ ସୂତା କଟାଣି ହେଉଛି ଉପଯୁକ୍ତ ଶିଳ୍ପ ।

୬ । ମୁଁ ସେହି ଦିନକୁ ଝିୁଳ ହେଉଛି, ଯେଉଁଦିନ ଶାସକ କମ୍ପା ରାଜନୈତିକ ଶ୍ରେଣୀ ଦରିଦ୍ର କୃଷକ ସମ୍ପ୍ରଦାୟ ପ୍ରତି ବିହିତ ବିବେଚନା କରିବେ, ଯାହାଦ୍ୱାରା କୃଷକକୁଳର ଦୈନ୍ୟ ଅପସରି ଯିବ ।

୭ । କୃଷକ ଓ କୋଟିପତି ମଧ୍ୟରେ ଥିବା ବିଭେଦର ପ୍ରାଚୀରକୁ ଭାଙ୍ଗି ଦିଅ। ଯାଉ ।

୮ । ଗ୍ରାମର କୃଷକ ଜଣେ ଜ୍ଞାନୀଲୋକ । ତା'ର ଅପଜଡ଼ା ବେଶ ବିନ୍ୟାସ ତଳେ ଆଧାତ୍ମିକତାର ଅସରନ୍ତି ଭଣ୍ଡାର ଆମ୍ଭେମାନେ ଦେଖିବାକୁ ପାଇବା ।

---

## ଖଦୀ

୧ ।. ଗାଁର ଯାବତୀୟ ଦରକାରୀ ଜିନିଷ ଗାଁରେ ତିଆରି ହେବା ଉଚିତ । ଖଦୀ ସେମାନଙ୍କ ମଧ୍ୟରୁ ପ୍ରଥମ ।

୨ । ସ୍ୱରାଜ ପରି ଖଦୀ ମଧ୍ୟ ରାଷ୍ଟ୍ରୀୟ ଜୀବନ ପାଇଁ ନିତାନ୍ତ ଆବଶ୍ୟକ ।

୩ । ଖଦୀ ଅର୍ଥ ଶାସ୍ତ୍ରରଚନା, ସ୍ୱଦେଶ-ପ୍ରେମ-ଭାବନା ଓ ମାନବିକ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ।

୪ । ମୁଁ ଓ ଅନ୍ୟ ଲୋକେ ମଧ୍ୟ ଜନସମାଜର ସେବା କରିବାକୁ ସକ୍ଷମ ହେଉଅଛୁ । ଏହା ତ୍ୟାଗଯୋଗୁଁ ସମ୍ଭବପର । ଏହି ସେବା ଖଦୀ ଜରିଆରେ ମଧ୍ୟ କରାଯାଇପାରେ ।

୫ । ଖଦୀର ସଫଳତାରେ କାରଖାନାର ସାମ୍ରାଜ୍ୟ ନିଶ୍ଚୟ ଟଳି-ପଡ଼ିବ ।

୬ । କିଛି ଖଦୀ ଓ କିଛି ମିଲ୍ ଲୁଗା ପିନ୍ଧିଥିବା ବ୍ୟକ୍ତିଙ୍କୁ ଖଦୀଧାରୀ କୁହାଯାଇ ପାରେ ନାହିଁ ।

୭ । ଖଦୀ ପିନ୍ଧିଲା ଲୋକ ବିଦେଶରେ ମଧ୍ୟ ଖଦୀ ପିନ୍ଧିପାରେ ।

୮ । ଯଦି ମନ୍ତ୍ରୀମାନଙ୍କର ଖଦୀ ପ୍ରତି ବିଶ୍ବାସ ଆସେ, ତାହାହେଲେ ଏହାର ଲୋକପ୍ରିୟତା ପାଇଁ ସେମାନେ ବହୁତ କିଛି କରିପାରିବେ ।

୯ । ଖଦୀ କେବଳ କଂଗ୍ରେସଲୋକଙ୍କ ପୋଷାକ ନୁହେଁ । ସମସ୍ତଙ୍କ ପାଇଁ ଏହା ହେଉଛି ରାଷ୍ଟ୍ରୀୟ ପୋଷାକ ପର ।

୧୦ । ଖଦୀର ଲକ୍ଷ୍ୟ ହେଉଛି ସମସ୍ତଙ୍କପାଇଁ ଆର୍ଥିକ ସ୍ୱତନ୍ତ୍ରତା ଓ ସମତାର ପ୍ରବର୍ତ୍ତନ ।

୧୧ । ଖଦୀ ସମ୍ବନ୍ଧୀୟ ଶାସ୍ତ୍ର ହେଉଛି ପରମାର୍ଥୀର ଶାସ୍ତ୍ର । ଅପରପକ୍ଷରେ ଏହାକୁ ଏକ ନିର୍ଭୁଲ ଅର୍ଥଶାସ୍ତ୍ର କହିଲେ ଭୁଲ ହେବ ନାହିଁ ।

୧୨ । ଲକ୍ଷ ଲକ୍ଷ ଲୋକଙ୍କର ସହଯୋଗ ପ୍ରାପ୍ତିପାଇଁ ଚରଖା ଓ ଖଦୀ ହେଉଛି ଏକ ସର୍ବୋତ୍ତମ ମାଧ୍ୟମ ।

୧୩ । ଯେପରି ଆମ ଘରେ ତିଆରି ଖାଦ୍ୟ ଦ୍ରବ୍ୟକୁ ଆମ୍ଭେମାନେ ପସନ୍ଦ କରିଥାଉଁ, ସେହିପରି ହାତକଟା ସୂତା ଓ ହାତବୁଣା ଲୁଗାକୁ ପସନ୍ଦ କରିବା ଉଚିତ ।

୧୪ । ନିର୍ବଳ ପ୍ରତି ସହାନୁଭୂତି ଦେଖାଇବାର ସଙ୍କେତ କିଛି ନା କିଛି ଆମ୍ଭ ନିକଟରେ ରହିବା ଉଚିତ । ତାହା ଖଦୀ ବ୍ୟତୀତ ଅନ୍ୟ କିଛି ହୋଇ ନ ପାରେ ।

୧୫ । ଏହା ମୋର ଦୃଢ଼ ସ୍ୱୀକାରୋକ୍ତି ଯେ ଯଦି କୌଣସି ରଚନାତ୍ମକ କାର୍ଯ୍ୟ ସଫଳ ହେବାର ଯୋଗ୍ୟ, ତାହା ହେଉଛି ଖଦୀ କାର୍ଯ୍ୟକ୍ରମ ।

୧୬ । ତ୍ୟାଗ ବଳରେ ଜନସମାଜର ସେବା କେବଳ ଖଦୀ ଦ୍ୱାରହିଁ ସମ୍ଭବପର ।

୧୭ । ହିନ୍ଦୁସ୍ଥାନ ପ୍ରଥମେ ନିଜର ପୋଷାକ ଓ ଭାଷାକୁ ଆପଣାର କରିବା ଉଚିତ ।

୧୮ । ଖଦୀ ମହର୍ଗ ହେଉ, ହାତରେ ସଫା କରିବାକୁ ଅସୁବିଧା ପଡ଼ିଲେ ମଧ୍ୟ ସହଯୋଗୀ ଏହାକୁ ପିନ୍ଧିବା ବିଧେୟ ।

୧୯ । ମୋ ପକ୍ଷରେ ଖଦୀ ପିନ୍ଧିବା ଜାତିର ପତାକା ଧାରଣ କରିବା ପରି ।

---

## ଗରିବ

୧ । ଗରିବ ହୋଇ ଯେ ସତ୍ୟରୁ ନ ଟଳେ ସେ ପ୍ରକୃତ ସତ୍ପୁରୁଷ ।

୨ । ଗ୍ରାମରୁ ନିରକ୍ଷରତା ଓ ଦାରିଦ୍ର୍ୟ ଦୂର ହୋଇଗଲେ, ଶିଷ୍ଟ, ସୁସ୍ଥକାରୀ ଓ ସ୍ୱତନ୍ତ୍ର ନାଗରିକଙ୍କର ସୁନ୍ଦର ନମୁନା ଆମ୍ଭେମାନେ ଦେଖିବାକୁ ପାଇବା ।

୩ । ପରମେଶ୍ୱର ଓ ଖୁଦାଙ୍କ ନାମ ସ୍ମରଣ କରି ମୁଁ ଭାରତର ଗରିବ ସନ୍ତାନମାନଙ୍କ ପାଇଁ ରେଖାର ବ୍ୟବସ୍ଥା କରୁଅଛି ଓ ଆପଣମାନଙ୍କୁ ମଧ୍ୟ ସେହିପରି କରିବାକୁ ପ୍ରାର୍ଥନା କରୁଅଛି ।

୪ । ଭାରତର କୋଟି କୋଟି ଗ୍ରାମରୁ ଦାରିଦ୍ର୍ୟ ଦୂର ହେଲେ ସ୍ୱରାଜ୍ୟ ପ୍ରାପ୍ତି ହେଲା ବୋଲି ଜାଣିବା ।

୫ । ଭାରତବାସୀଙ୍କ ହୃଦୟରୁ ଆଳସ୍ୟ ଦୂର ନହେବାଯାଏ ଦେଶରୁ ଦାରିଦ୍ର୍ୟ ଲୋପ ପାଇବା ଅସମ୍ଭବ ।

୬ । ଚରଖା ଚାଳନା ଦ୍ୱାରା ଦରିଦ୍ର ନାରାୟଣଙ୍କର ସେବା କରାଯାଇଥାଏ ।

୭ । ଗରିବ ହେବା ପୁଣ୍ୟର ଫଳ ଓ ଧନୀ ହେବା ପାପର ଫଳ ହୋଇପାରେ ।

୮ । ଦାରିଦ୍ର୍ୟ ଦୈବୀ ଅଭିଶାପ ନୁହେଁ, ଏହା ହେଉଛି ମଣିଷର ସୃଷ୍ଟି ।

୯ । ଦାରିଦ୍ର୍ୟ ଦୂର କରିବା ଦାୟିତ୍ୱ ଶାସକ ଓ ସମାଜ ଉଭୟଙ୍କ ଉପରେ ନ୍ୟସ୍ତ ।

---

## ଗଣତନ୍ତ୍ର

୧ । ମୁଁ ଯେଉଁ ଗଣତନ୍ତ୍ର ବିଷୟ ଚିନ୍ତା କରୁଛି । ସେଥିରେ ବଳବାନ ପରି ଅତି ଦୁର୍ବଳ ମଧ୍ୟ ସମଅଧିକାର ପାଇବ ।

୨ । ଗଣତନ୍ତ୍ର ଗୋଟିଏ ରାଜ୍ୟ ନୁହେଁ ଯେଉଁଠିକି ଲୋକମାନେ ମେଣ୍ଢାପରି କାମ କରିବେ ।

୩ । ଗଣତନ୍ତ୍ର ଓ ହିଂସା, ଏ ଦୁହିଁଙ୍କର ଏକତ୍ର ସ୍ଥିତି ଅସମ୍ଭବ ।

୪ । ପ୍ରକୃତ ଗଣତନ୍ତ୍ର ଦେଶର ନାଗରିକ ଅହିଂସା ଉପାୟରେ ନିଜର, ନିଜ ଦେଶର ଓ ସମଗ୍ର ମାନବସମାଜର ସ୍ୱାଧୀନତା ରକ୍ଷା କରେ ।

୫ । ଗଣତନ୍ତ୍ରର ଶକ୍ତି ଓ ପର୍‌କାଷ୍ଠା କାହା ଉପରେ ଲଦି ଦିଆଯାଇ ନ ପାରେ ।

୬ । ଯୁଦ୍ଧଦ୍ୱାରା ଗଣତନ୍ତ୍ର ହାସଲ କରାଯାଇ ପାରେ ନା ।

୭ । ଯେଉଁ ଗଣତନ୍ତ୍ର ଅଜ୍ଞତା, ଦୁରଭିସନ୍ଧି ଓ ଅନ୍ଧାନୁସରଣ ଉପରେ ପ୍ରତିଷ୍ଠିତ ତାହା ସ୍ୱତଃ ନଷ୍ଟ ହୋଇଥାଏ ।

୮ । ଭୟ ଓ ଘୃଣାର ଭୂମିକା ଉପରେ ଗଣତନ୍ତ୍ର ସ୍ଥାପନା ଅସମ୍ଭବ ।

୯ । ଅହିଂସା ଓ ସହନଶୀଳତା ଦ୍ୱାରା ଗଣତନ୍ତ୍ରର ସୁରକ୍ଷା ସମ୍ଭବପର ।

---

## ଗ୍ରାମ

୧ । ମୁଁ ଦୃଢ଼ ଭାବରେ ବିଶ୍ୱାସ କରୁଛି ଯେ ଭାରତର ସ୍ଥିତି, ସମୃଦ୍ଧ ନଗରମାନଙ୍କ ଉପରେ ନୁହେଁ, ସାତଲକ୍ଷ ଗ୍ରାମହିଁ ହେଉଛି ଭାରତର ମୂଳଭିତ୍ତି ।

୨ । ଶିକ୍ଷିତ ସଂପ୍ରଦାୟଙ୍କ ଠାରୁ ଗ୍ରାମଗୁଡ଼ିକ କୌଣସି ଉପାୟରେ ଉପକୃତ ହେଉ ନାହାନ୍ତି, କାରଣ ସେମାନେ ନଗର ଜୀବନ ପ୍ରତି ଅଧିକ ଆସକ୍ତି ପ୍ରକାଶ କରୁଅଛନ୍ତି ।

୩ । ଗ୍ରାମ ଓ ନଗର ମଧ୍ୟରେ ଏକ ନୈତିକ ସଂପର୍କ ସ୍ଥାପିତ ହେଉ, ଏହାହିଁ ମୋର ଏକାନ୍ତ କାମନା ।

୪ । ଗ୍ରାମର ଅର୍ଥନୈତିକ ପୁନରୁତ୍‌ଥାନ ପାଇଁ ପ୍ରଥମେ ଖାଦ୍ୟ ସଂସ୍କାର ଲୋଡ଼ା ।

୫ । କୌଣସି ମହାପୁରୁଷ କହିଛନ୍ତି ଯେ ଗ୍ରାମଗୁଡ଼ିକ ଭଗବାନଙ୍କ ଦ୍ୱାରା ସୃଷ୍ଟ, ସହରଗୁଡ଼ିକ ମଣିଷ ଦ୍ୱାରା ସୃଷ୍ଟ । ତେଣୁ ଭଗବାନଙ୍କ ସୃଷ୍ଟ ଗ୍ରାମକୁ ଯାଇ ଜନତାର ସେବା କରିବା ଉଚିତ ।

୬ । ଗ୍ରାମ ସେବା ପାଇଁ ଯେ ପ୍ରଥମେ ବାହାରିବ, ତାର ମାନସିକ ଚିନ୍ତା ସେଥି ଅନୁସାରେ ପରିଚାଳିତ ହେବା ଉଚିତ ।

୭ । ସେବା ମନୋବୃତ୍ତି ଥିବା ଲୋକମାନଙ୍କୁ ଗ୍ରାମ ସଂଗଠନ ପାଇଁ ସହଜରେ ଉପାୟ ମିଳିଥାଏ ।

୮ । ଗ୍ରାମବାସୀଙ୍କର ଗୋଟିଏ ପଇସା ଅଧିକ ଆୟ ପାଇଁ ମଧ୍ଯ ଆମ୍ଭେ ସବୁପ୍ରକାର ଉପାୟ କରିବା ଉଚିତ ।

୯ । ଗ୍ରାମର ବେକାରମାନଙ୍କ ହାତରେ ଚରଖା ଓ ତକ ଦେବା ଉଚିତ ।

୧୦ । ଗାଁରୁ ଜାତି ଅଜାତି, ଛୁଆଁ ଛୁତି ପ୍ରଥମେ ଦୂରକରିବା ଉଚିତ ।

୧୧ । ସ୍ୱାର୍ଥ ମନୋବୃତ୍ତି ନେଲେ ଗାଁରେ ସେବା କାର୍ଯ୍ୟ ସହଜରେ ହୋଇପାରେ ନା ।

୧୨ । ମୁଁ ଆଜ ସ୍ପଷ୍ଟଭାବେ ବିଚାର କରି ଠିକ୍ କରିଛି ଯେ ମୋ'ର ସ୍ଥାନ ହେଉଛି ଗାଁରେ; ମୁଁ ଗାଁ'କୁ ଯିବାକୁ ଚାହୁଁଛି ।

୧୩ । ଗାଁରେ ଗାଈ ଗୋରୁଙ୍କ ଗୋବର ସହିତ ମଣିଷର ମଳମୂତ୍ର ମଧ୍ଯ ଖତରୂପେ ବ୍ୟବହାର କରାଯିବା ଉଚିତ ।

୧୪ । ଗ୍ରାମ ସେବା ପାଇଁ ଯୁବକମାନଙ୍କ ମନରେ ଅତୁଟ ଧୈର୍ଯ୍ୟ, ଆତ୍ମବିଶ୍ୱାସ, ଶାରୀରିକ ଶକ୍ତି, ତାଲିମ୍ ପାଇବା ପାଇଁ ଚିତ୍ତ ପରତା ରହିବା ଉଚିତ ।

୧୫ । 'ଲିଓନେଲ କୁର୍ଟିସ୍' ଆମ୍ଭ ଗ୍ରାମଗୁଡ଼ିକୁ ଗୋବର ଗଦା ସହିତ ତୁଳନା କରିଅଛନ୍ତି । ତେଣୁ ଯଥେଷ୍ଟ ଲଜ୍ଜା ସହକାରେ ଆମ୍ଭମାନଙ୍କୁ ଆଦର୍ଶ ଗ୍ରାମ ସଂଗଠନର ଦାୟିତ୍ୱ ବହନ କରିବାକୁ ପଡ଼ିବ ।

୧୬ । ଗ୍ରାମକୁ ଶ୍ରୀ ସମୃଦ୍ଧ କରିବା ମୋ ଜୀବନର ଲକ୍ଷ୍ୟ ।

୧୭ । ମୁଁ ଚାହେଁ ପ୍ରତିଗ୍ରାମରେ ଚାରଣଭୂମି ପରି ଗୋଟିଏ ଗୋଟିଏ ବିଦ୍ୟୁତ୍ ସରବରାହ କେନ୍ଦ୍ର ରହୁ; କିନ୍ତୁ ଯେ ପର୍ଯ୍ୟନ୍ତ

ଏହାର ବ୍ୟବସ୍ଥା ନହୋଇଛୁ ହସ୍ତଶିଳ୍ପ ବ୍ୟତୀତ ଗ୍ରାମବାସୀମାନଙ୍କର ଅଧିକ ଆୟର ଅନ୍ୟ ଉପାୟ ଅଛି କି ?

୧୮ । ଶିକ୍ଷିତ ସମ୍ପ୍ରଦାୟଙ୍କଠାରୁ ଗ୍ରାମଗୁଡ଼ିକ କୌଣସି ଉପାୟରେ ଉପକୃତ ହେଉ ନାହାନ୍ତି ; କାରଣ ସେମାନେ ନଗରଜୀବନ ପ୍ରତି ଅଧିକ ଆସକ୍ତି ପ୍ରକାଶ କରୁଅଛନ୍ତି ।

---

## ଗୋସେବା

୧ । ଗୋସେବାରେ ଅବହେଳା ବିଷୟ ଭାବିଲେ ମୋ ଆଖିରେ ଲୁହ ଆସି ଥାଏ ।

୨ । ଗାଈପରି ନିରୀହ ଓ ଉପଯୋଗୀ ପଶୁଙ୍କୁ ବଧ କରିବା ରାଷ୍ଟ୍ର ପକ୍ଷରେ ଏକ ଆତ୍ମଘାତୀ ନୀତି ।

୩ । ଧର୍ମ ମନୋଭାବ ନେଇ ଗୋସେବା କଲେ ମଧ୍ୟ ମଣିଷ ଖାଣ୍ଟି ଦୁଧ ଓ ଘିଅ ଖାଇବାକୁ ପାଇ ନିଜକୁ ନିରୋଗ ଓ ସ୍ୱାସ୍ଥ୍ୟବାନ ରଖିପାରେ ।

୪ । ଗାଈପରି କରୁଣାମୟୀ ପ୍ରାଣୀ ଏ ଭୂମଣ୍ଡଳରେ କେହି ନାହାନ୍ତି ।

୫ । ଗୋବଧକୁ କେବଳ ଆଇନତଃ ନିଷିଦ୍ଧ କରିବା ଉଚିତ ନୁହେଁ, ନୈତିକତା ଦୃଷ୍ଟିରୁ ମଧ୍ୟ ଏହା ଅସମୀଚୀନ ।

୬ । ଭାରତରେ ଅଗଣିତ ଲୋକ ଗାଈଙ୍କ ଯୋଗୁଁ ବଞ୍ଚି ରହିଥାନ୍ତି । କୃଷିର ସମୃଦ୍ଧି ଗୋଜାତିର ସମୃଦ୍ଧି ଉପରେ ନିର୍ଭର କରିଥାଏ ।

୭ । ଗୋସେବା ନିଜ ସେବା କରିବା ସହିତ ସମାନ ।

୮ । ହିନ୍ଦୁ ସମାଜ ଉପରେ ଗୋଜାତିର ବିନମ୍ର ସ୍ୱଭାବ ପ୍ରତିଭାତ ।

୯ । ଗାଈ ହିନ୍ଦୁ ଜୀବନର ଅହିଂସା ତଥା ସହନଶୀଳତାର ପ୍ରତୀକ ।

୧୦ । କୌଣସି ହିନ୍ଦୁକୁ ଗୋସେବା ବିଷୟରେ ଉପଦେଶ ଦେବା ଏକ ଦୁର୍ଭାଗ୍ୟପୂର୍ଣ୍ଣ ପ୍ରସଙ୍ଗ ।

୧୧ । କେବଳ ଧର୍ମ ମନୋଭାବ ନେଇ ଗୋସେବା ନ କରି, ଉଦ୍ୟୋଗ ଦୃଷ୍ଟିରୁ ତାହା କରିବା ଉଚିତ ।

୧୨ । ଯେହେତୁ ଗାଈ ଆମକୁ ଦୁଧ ଦିଏ ଓ ତାର ସନ୍ତାନ ବଳଦ ଆମର ସାଥୀପରି କୃଷି ଓ ବାଣିଜ୍ୟରେ ସାହାଯ୍ୟ କରେ; ତେଣୁ ଗାଈକୁ ଆମ୍ଭେମାନେ ମା'ଆ ବୋଲି କହୁଥାଉଁ ।

---

## ଗୋମାତା

୧ । ଗୋମାତା ମୋ ନିକଟରେ ଦୟାର ଏକ ମୂର୍ତ୍ତିମନ୍ତ କବିତା ।

୨ । ଗୋ ରକ୍ଷା ଅର୍ଥ ମନୁଷ୍ୟ ଓ ପଶୁ ଜାତି ମଧ୍ୟରେ ପ୍ରୀତି ସ୍ଥାପନ ।

୩ । ମୁଁ ଗୋମାତା ଯୋଗୁଁ ମଣିଷ ମାରି ପାରିବ ନାହିଁ କି ମଣିଷ ଯୋଗୁଁ ଗୋମାତାଙ୍କୁ ବଧ କରିପାରିବ ନାହିଁ ।

୪ । ଗୋମାତା ହେଉଛନ୍ତି ଭାରତର ରକ୍ଷାକର୍ତ୍ତ୍ରୀ ।

୫ । ଗୋ ରକ୍ଷା ହିନ୍ଦୁ ଧର୍ମର ବିଶ୍ୱକୁ ହେଉଛି ଏକ ମହତ୍ତ୍ୱ ଦାନ ।

୬ । ଗୋ ସେବା ପବିତ୍ରତାର ଏକ ପରମ ଉପାୟ ।

୭ । ଯେଉଁ ଦେଶରେ ଗୋମାତାଙ୍କୁ ପୂଜା କରାଯାଏ, ସେ ଦେଶରେ ସେମାନଙ୍କର ଯତ୍ନ ନ ନେବା ବଡ଼ ପରିତାପର ବିଷୟ ।

୮ । ମୁସଲମାନମାନଙ୍କ ସହିତ ବନ୍ଧୁତା ସ୍ଥାପନ କରି, ଗୋ ଜାତିର ରକ୍ଷଣାବେକ୍ଷଣ କରାଯାଇପାରେ ।

୯ । ହିଂସାଦ୍ୱାରା ଗୋରକ୍ଷା ପାଇଁ ଚେଷ୍ଟା କରିବା, ହିନ୍ଦୁ ଧର୍ମର ବିରୋଧୀ ।

୧୦ । ଦୁଇଟି ବଳବତ୍ତର ଇଚ୍ଛା ଯାହାକୁ ନେଇ ମୁଁ ବଞ୍ଚି ରହିଛି । ତାହା ହେଉଛି—ଅସ୍ପୃଶ୍ୟମାନଙ୍କର ଉଦ୍ଧାର ଓ ଗୋଜାତିର ସୁରକ୍ଷା ।

---

## ଗୀତା

୧ । ମୁଁ ରାଜନୀତିର ମାର୍ଗ ଗୀତାରୁ ପାଇଅଛି ।

୨ । ମାନସିକ ଶାନ୍ତି ସବୁଠାରୁ କଠିନ । ଏଥିପାଇଁ ଗୀତାଧ୍ୟୟନ ସର୍ବୋତ୍କୃଷ୍ଟ ଉପାୟ ।

୩ । ଗୀତା ହେଉଛି ମୋ ପକ୍ଷରେ ଶାଶ୍ୱତମାର୍ଗଦର୍ଶିକା । ନିଜର କାର୍ଯ୍ୟ ପାଇଁ ମୁଁ ଗୀତାରୁ ଆଧାର ଖୋଜିଥାଏ । ଯଦି କିଛି ପାଏ ନାହିଁ, ତାହାହେଲେ କାର୍ଯ୍ୟର ଗତିରେ ଅନିଶ୍ଚିତତା ଦେଖାଦିଏ ।

୪ । ସଦ୍‌ଜ୍ଞାନ ପାଇଁ ଗୀତାକୁ ମୁଁ ସର୍ବୋତ୍କୃଷ୍ଟ ଗ୍ରନ୍ଥ ବୋଲି ମାନିଥାଏ ।

୫ । ଗୀତା ମୋ'ର ହେଉଛି ଧର୍ମ ଜ୍ଞାନର ଭଣ୍ଡାର ଘର ।

୬ । ଗୀତା ହେଉଛି ଉନ୍ନତିର ଚଣି ସ୍ୱରୂପ ।

୭ । ମୋ ପକ୍ଷରେ ଗୀତା ସବୁ ଧର୍ମର ଗୂଢ଼ପଣ । ସଂସାରରେ ସବୁ ଧର୍ମଗ୍ରନ୍ଥର ଲୁପ୍ତରହସ୍ୟର ଅପରୂପ ସଞ୍ଚୟନ ମୁଁ ଗୀତାରୁ ହିଁ ପାଇଥାଏ ।

୮ । ଶ୍ରୀମଦ୍‌ଭଗବତ୍ ଗୀତା ଓ ତୁଳସୀ କୃତ ରାମାୟଣରୁ ମୋତେ ସବୁଠାରୁ ଅଧିକ ଶାନ୍ତି ମିଳିଥାଏ ।

୯ । ଯଦି ସଂସାରର ସର୍ବୋତ୍କୃଷ୍ଟ ଗ୍ରନ୍ଥ ମୋତେ କେହି ବାଛିବାକୁ କହେ ତାହାହେଲେ ମୁଁ ଗୀତାକୁ ମନୋନୀତ କରିବି ।

୧୦ । ଏହା ମୁଁ ଅବବୋଧ କରିଛି ଯେ ଯଦି କୌଣସି ଭାବନା ହିନ୍ଦୁ ଜାତିକୁ ନିର୍ଭୟ ଓ ବୀରତ୍ୱ ପ୍ରଦାନ କରିଥାଏ, ତାହା ହେଲେ ସେ ହେଉଛି ଗୀତାର ଅନ୍ତର୍ନିହିତ ଭାବନା ।

୧୧ । ହିନ୍ଦୁ-ଜାତିର ଅନେକ ସୁଗୁଣ ଗୀତାର ବହୁର ପଦ୍ଧତିର ପ୍ରଭାବ ମାତ୍ର ।

---

## ଗୁରୁ

୧ । ମନରେ ଶୁଦ୍ଧ ଗୁରୁ ଭକ୍ତି ନ ଆସିଲେ ଚରିତ୍ର ଗଠନ ଅସମ୍ଭବ ।

୨ । ଯେ ଶିଷ୍ୟର ସନ୍ଦେହ ଦୂର କରି ସଦ୍‌ଜ୍ଞାନ ଦିଏ ସେହିଁ ପ୍ରକୃତ ଗୁରୁ ।

୩ । ସତ୍‌ଜ୍ଞାନ ଓ ଆଧ୍ୟାତ୍ମିକ କଲ୍ୟାଣ ପାଇଁ ଗୁରୁ ସେବା କରାଯାଏ, ଧନ ପ୍ରାପ୍ତିର ବୃତ୍ତି ଶିକ୍ଷା କରିବା ପାଇଁ ନୁହେଁ ।

୪ । ଗୁରୁବିନା କୌଣସି କ୍ଷେତ୍ରରେ ସମୁଚିତ ଜ୍ଞାନ ପ୍ରାପ୍ତି ଅସମ୍ଭବ ।

୫ । ଗୁରୁଙ୍କୁ ଶ୍ରଦ୍ଧା ଓ ସେବା କଲେ ଜ୍ଞାନ ସହଜ ଲଭ୍ୟ ହୁଏ ।

୬ । ଶିକ୍ଷାର୍ଥୀମାନେ ବିନମ୍ର ହେବା ଉଚିତ । ଶିକ୍ଷକ ତଥା

ଗୁରୁଜନଙ୍କ ପ୍ରତି ଗୁରୁଭାବ ମନରେ ନ ଆସିଲେ, ସେମାନଙ୍କ-ଠାରୁ କୌଣସି ବିଷୟ ଶିକ୍ଷା କରିବା ସହଜ ନୁହେଁ ।

୭ । ମୁଁ ଗୁରୁ ପରମ୍ପରାକୁ ମାନିଥାଏ; କିନ୍ତୁ ପ୍ରତ୍ୟେକ ଶିକ୍ଷକ ଗୁରୁ ନୁହଁନ୍ତି । ଗୁରୁ ଶିଷ୍ୟଙ୍କ ସମ୍ବନ୍ଧ ଆଧ୍ୟାତ୍ମିକ ଓ ସ୍ୱୟଂସ୍ଫୂର୍ତ୍ତ ।

୮ । ଗୁରୁଙ୍କର ଶିଷ୍ୟମାନଙ୍କ ପ୍ରତି ପ୍ରେମ ମଧ୍ୟ ସ୍ୱାଭାବିକ ।

୯ । ସଂସାରରେ ଗୁରୁଙ୍କ ପରି ବନ୍ଦନୀୟ ଅନ୍ୟ କେହି ନାହାନ୍ତି ।

୧୦ । ଭାରତର ପ୍ରାଚୀନ ଗୁରୁ ଶିଷ୍ୟ ପରମ୍ପରା ଜ୍ଞାନବିକାଶ ସାଧନର ପ୍ରଧାନ ସହାୟକ ଥିଲା ।

୧୧ । ବୁଦ୍ଧିମାନ ବ୍ୟକ୍ତି ଗୁରୁଙ୍କ ଋଣକୁ ବହୁତ ଗୁରୁତ୍ୱ ଦେଇଥାନ୍ତି, କାରଣ ଅନ୍ୟାନ୍ୟ ଋଣ ସମସ୍ତ ଅନୁଯାୟୀ ପରିଶୋଧ କରାଯାଏ; କିନ୍ତୁ ଜ୍ଞାନ ଦାନ ରୂପକ ଋଣ ପରିଶୋଧ କରିବା ଅସମ୍ଭବ ।

---

## ଘୃଣା

୧ । ମଣିଷର ପାପ କର୍ମକୁ ଘୃଣାକର; କିନ୍ତୁ ପାପୀକୁ ଘୃଣାକର ନାହିଁ ।

୨ । ଆଜି ସମଗ୍ର ପୃଥିବୀରେ ଘୃଣା ସଂକ୍ରାମକ ରୋଗ ପରି ବ୍ୟାପି ଯାଇଛି ।

୩ । ଘୃଣା ଧ୍ୱଂସର ପଥ ପରିଷ୍କାର କରେ ।

---

# ଚରଖା

୧ । ଗ୍ରାମ୍ୟଶିଳ୍ପ ରୂପକ ଗ୍ରହମାନଙ୍କ ମଧ୍ୟରେ ଚରଖା ହେଉଛି ସୂର୍ଯ୍ୟ ପରି ।

୨ । ଚରଖା ହେଉଛି ସତ୍ୟର ଅଂଶ ବିଶେଷ । ତେଣୁ ଏହାକୁ ମୁଁ ସତ୍ୟରୂପୀ ଭଗବାନଙ୍କର ମୂର୍ତ୍ତିମନ୍ତ ପ୍ରକାଶ ବୋଲି ଭାବିଥାଏ ।

୩ । ଚରଖା, ମାଳା ଓ ଭଗବାନ ଏକ ।

୪ । ଚରଖା ପାଦହୀନ ଲୋକର ଆଶା ବାଡ଼ି ପରି ।

୫ । ଚରଖା ହେଉଛି ଅହିଂସାର ପରମ ପ୍ରତୀକ ।

୬ । ଏକାଗ୍ରତା ପାଇଁ ଚରଖା ହେଉଛି ମୋର ମାଳା ସ୍ୱରୂପ ।

୭ । ଚରଖାର ସଙ୍ଗୀତ ଅନ୍ୟ ସଙ୍ଗୀତ ଠାରୁ ଯଥେଷ୍ଟ ମଧୁର, କାରଣ ଏହି ସଙ୍ଗୀତରେ ପ୍ରେମର ମୂର୍ଚ୍ଛନା ଥାଏ ।

୮ । ଯେ ଦେଶ ପାଇଁ ମନରେ ଦୃଢ଼ ସଂକଳ୍ପ ଆଣି ଚରଖାରେ ସୂତା କାଟେ ତା ମନରେ ସ୍ୱତଃ ପବିତ୍ରତା ଓ ଶ୍ରଦ୍ଧା ଜାଗରିତ ହୁଏ ।

୯ । ରାଜନୀତି କ୍ଷେତ୍ରରେ ମଧ୍ୟ ଚରଖାର ପ୍ରାଧାନ୍ୟ ରହିଛି ।

୧୦ । ଚରଖାରେ ସୂତା କାଟିବା ପାଇଁ ସହଯୋଗ ମନୋବୃତ୍ତି ଦରକାର ।

୧୧ । ଯଦି ବହୁସଂଖ୍ୟକ ଲୋକ ଚରଖା ବ୍ୟବହାର ନ କରନ୍ତି, ତାହାହେଲେ ହାତରେ ସୂତା କାଟିବାର ଲକ୍ଷ୍ୟ ସଫଳ ହୋଇ ପାରିବ ନାହିଁ ।

୧୨ । ଚରଖା ଅନ୍ୟ ଦେଶ ପାଇଁ ଅନୁକୂଳ ହୋଇ ନପାରେ; କିନ୍ତୁ ଭାରତ ପାଇଁ ଏହା ସର୍ବଦା ଅନୁକୂଳ ।

୧୩ । ମୋ'ର ଚରଖାଠାରୁ ଦୁନିଆରେ ଆଉ ପ୍ରିୟ ବସ୍ତୁ ନାହିଁ ।

୧୪ । ଚରଖା ଭାରତର ଆର୍ଥିକ ଉନ୍ନତିର ପ୍ରତୀକ ।

---

# ଗୃହକର

୧ । ଗୃହକରଙ୍କ ସହିତ ପର ଲୋକପରି ବ୍ୟବହାର କରିବା ଉଚିତ ନୁହେଁ ।

୨ । ଗୃହକର ପ୍ରତି ମନରେ ହୀନଭାବ ଆଣି ଅସୁନ୍ଦର ବ୍ୟବହାର କରିବା ଉଚିତ ନୁହେଁ ।

୩ । ଯଦି ଗୃହକର ସହିତ ଭଲ ବ୍ୟବହାର କରାଯାଏ, ତାହା ହେଲେ ବଦଳରେ ତାଙ୍କଠାରୁ ଆନ୍ତରିକତା ଆଶା କରିବା ଉଚିତ ।

୪ । ମାଲିକ ନିଜର ଗୃହକରଠାରୁ ନିଜକୁ ଶ୍ରେଷ୍ଠ ମନେ କରିବାର କୌଣସି କାରଣ ନାହିଁ, କିମ୍ବା ସେମାନଙ୍କର ସମ୍ମାନ ଉପରେ ବାଧା ଦେବା ଯୁକ୍ତିସଙ୍ଗତ ନୁହେଁ ।

୫ । ମାଲିକ ଓ ଗୃହକରଙ୍କର ଭାବନା ଓ ବିଚାରରେ ମଧ୍ୟ ପାର୍ଥକ୍ୟ ପରିଲକ୍ଷିତ ହେବା ଉଚିତ ନୁହେଁ । ଯଦି ହୁଏ, ତାହାହେଲେ ଗୋଲାମୀ ପ୍ରଥା ଦୃଢ଼ୀଭୂତ ହେବ ।

---

# ଚରିତ୍ର

୧ । ଚରିତ୍ର ଜୀବନର ସବୁଠାରୁ ମୂଲ୍ୟବାନ ବସ୍ତୁ ।

୨ । ବ୍ୟକ୍ତି ବିଶେଷଙ୍କ ଚରିତ୍ର ରାଷ୍ଟ୍ରର ସମ୍ମାନ ବଢ଼ାଇ ଥାଏ ।

୩ । ଚରିତ୍ର ଗଠନ କାର୍ଯ୍ୟ କମ୍ ମହତ୍ତ୍ୱ ନୁହେଁ ।

୪ । ସ୍ୱାଧୀନତା ପାଇ ସୁଦ୍ଧା, ଭାରତୀୟମାନେ ଚରିତ୍ର ଗଠନରେ ତତ୍ପର ହୋଇ ନ ଥିବାରୁ ଅଗ୍ରଗତି କରିପାରୁ ନାହାନ୍ତି ।

୫ । ଚରିତ୍ର ଦୁନିଆରେ ଧନ ଦୌଲତର ମୂଲ୍ୟ ବଢ଼ାଇ ଥାଏ ।

୬ । ଯେ କୌଣସି ଉପାୟରେ ଚରିତ୍ର ରକ୍ଷା କରିବା ଉଚିତ ।

୭ । ଶିକ୍ଷକଙ୍କ ବିନା ଚରିତ୍ର ଗଠନ ପରି ରଚନାତ୍ମକ କାର୍ଯ୍ୟ ଅନ୍ୟ କାହାଦ୍ୱାରା ସହଜେ ସମ୍ଭବପର ନୁହେଁ ।

୮ । ଶିକ୍ଷାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ଚରିତ୍ର ଗଠନ । ଶୁଦ୍ଧ ଚରିତ୍ରବଳ ଦ୍ୱାରା ମାନସିକ ବିକାଶ ସାଧନ କରାଯାଏ ଓ ମନରେ ଉଚ୍ଚାଭିଳାଷ ସ୍ଥାନ ପାଏ ।

୯ । ଯଦି ଆମ୍ଭେମାନେ ବ୍ୟକ୍ତିବିଶେଷଙ୍କ ଚରିତ୍ରକୁ ସଂଶୋଧନ ଓ ସମୃଦ୍ଧ କରିପାରିବା, ତାହାହେଲେ ସମାଜ ବଳେ ବଳେ ସଂଶୋଧିତ ଓ ବିକଶିତ ହେବ ଓ ସଂଗଠନମୂଳକ କାର୍ଯ୍ୟ ସହଜସାଧ୍ୟ ହୋଇ ପଡ଼ିବ ।

୧୦ । ଚାରିତ୍ରିକ ବିକାଶର ପ୍ରଥମ ସୋପାନ ହେଉଛି ଆନ୍ତରିକ ବିକାଶ ।

୧୧ । ଯଦି ରଚନାତ୍ମକ ଚରିତ୍ର ସମ୍ଭବପର ନ ହୁଏ, ତାହାହେଲେ ରଚନାତ୍ମକ କାର୍ଯ୍ୟ ବ୍ୟର୍ଥ ହେବା ଅବଶ୍ୟମ୍ଭାବୀ ।

୧୨ । ଚରିତ୍ର ଗଠନ ପାଇଁ ସ୍କୁଲ୍, କଲେଜମାନ ହେଉଛନ୍ତି କାରଖାନା ସ୍ୱରୂପ ।

୧୩ । ଚରିତ୍ର ଗଠନ ଜ୍ଞାନର ଚରମଲକ୍ଷ୍ୟ ହେବା ଉଚିତ ।

---

## ଚିନ୍ତା

୧ । ପୂର୍ଣ୍ଣ ସମର୍ପଣ ଅର୍ଥ ହେଉଛି ଚିନ୍ତାରୁ ମୁକ୍ତି ।

୨ । ଚିନ୍ତା-ଡାହାଣୀ ଶରୀର ଖାଏ ।

୩ । ଚିନ୍ତା ମଣିଷକୁ ଶକ୍ତି ଶୂନ୍ୟ କରିଦିଏ ।

୪ । ଚିନ୍ତା କରିବା ଦ୍ୱାରା ଯଦି କିଛି ଲାଭ ହୁଏ, ତାହା ହେଉଛି ମାନସିକ ଅଶାନ୍ତି ।

୫ । ରଚନାତ୍ମକ ଚିନ୍ତା ବାଞ୍ଛନୀୟ ।

୬ । ଅବାଞ୍ଛନୀୟ ଚିନ୍ତା ଶରୀରର କ୍ଷତିକାରକ ।

---

## ଛାତ୍ର

୧ । ଛାତ୍ରମାନେ ହେଉଛନ୍ତି ଭବିଷ୍ୟତର ମୂର୍ତ୍ତିମନ୍ତ ଆଶା ।

୨ । ଛାତ୍ରମାନେ ରାଜନୀତିରେ ଭାଗ ନେବା ଉଚିତ ନୁହେଁ । ସେମାନେ ଛାତ୍ର ହିସାବରେ ଅନୁସନ୍ଧାନୀ ରାଜନୀତିଜ୍ଞ ନୁହଁନ୍ତି ।

୩ । ଛାତ୍ରମାନଙ୍କ ଭିତରେ ସେବାଭାବ ବିକଶିତ ହେବା ଉଚିତ ।

୪ । ଛାତ୍ରମାନେ ଖଦୀ ପିନ୍ଧିବା ଅଭ୍ୟାସ କରିବା ଉଚିତ ।

୫ । ନିଜ ପଡ଼ୋଶୀଙ୍କ ଦୁଃଖ ଦୁର୍ଦ୍ଦଶା ମୋଚନ କରିବା ଛାତ୍ରମାନଙ୍କର ହେଉଛି ପ୍ରଥମ କର୍ତ୍ତବ୍ୟ ।

୬ । ଛାତ୍ରମାନେ ଯାହା ପଢ଼ନ୍ତି ବା ଶିଖନ୍ତି, ସମଗ୍ର ଗ୍ରାମବାସୀଙ୍କୁ ତାହା ଶିଖାଇବା ଉଚିତ ।

୭ । ଛାତ୍ରମାନେ ଲୁଚି କରି କୌଣସି କାର୍ଯ୍ୟ କରିବା ଉଚିତ ନୁହେଁ ।

୮ । ଛାତ୍ରମାନଙ୍କ ସାଥୀରେ ପଢ଼ୁଥିବା ଛାତ୍ରୀମାନଙ୍କ ପ୍ରତି ସେମାନେ ସଭ୍ୟତା, ଶିଷ୍ଟାଚାର ଓ ଶାଳୀନତା ସମ୍ପନ୍ନ ବ୍ୟବହାର କରିବା ଉଚିତ ।

୯ । ଛୁଟିଦିନ ଗାଁକୁ ଯାଇ ଛାତ୍ରମାନେ ଗାଁ ଲୋକଙ୍କ ସେବା କରିବା ଉଚିତ ।

୧୦ । ପ୍ରାଚୀନ ପରମ୍ପରା ଅନୁଯାୟୀ, ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଛାତ୍ରମାନେ ବିଦ୍ୟାଧ୍ୟୟନ କରିବା ବିଧେୟ ।

୧୧ । ବିଳାସ ବ୍ୟସନରେ ଛାତ୍ରମାନେ ବାପ ମା'ଙ୍କର ପଇସା ଖର୍ଚ୍ଚ କରିବା ଦ୍ୱାରା ନିଜର କ୍ଷତି କରିଥା'ନ୍ତି ।

୧୨ । ଭୋଗ ବିଳାସରେ ଛାତ୍ରଜୀବନର ସମାପ୍ତି ଘଟିଥାଏ ।

୧୩ । ଛାତ୍ର ଜୀବନରେ ପାନ, ସିଗାରେଟ୍ ଖାଇବା ଓ ମଦ ପିଇବା, ଆତ୍ମଘାତି ହେବା ଛଡ଼ା ଅନ୍ୟ କିଛି ନୁହେଁ ।

୧୪ । ଗୁରୁଜନମାନଙ୍କର ଆଦେଶ ଅନୁଯାୟୀ ଛାତ୍ରମାନେ କାମ ନ କଲେ ଅନୁଭବହୀନତା ଯୋଗୁଁ ନିଜର କ୍ଷତି କରିଥାନ୍ତି ।

୧୫ । ଛାତ୍ର କୌଣସି ମହାନ୍ ବ୍ୟକ୍ତିଙ୍କ ଆଦର୍ଶରେ ନିଜ ଜୀବନ ଗଢ଼ିବା ଉଚିତ ।

୧୬ । ଛାତ୍ର ଖଦି ପିନ୍ଧି ସ୍ୱଦେଶୀ ଜିନିଷର ବ୍ୟବହାର କରିବା ଉଚିତ ।

୧୭ । ଯେକୌଣସି ପଡ଼ୋଶୀ ହେଉନା କାହିଁକି, ଛାତ୍ର ନିସଂକୋଚରେ ସେମାନଙ୍କର ସେବା କରିବା ଉଚିତ ।

୧୮ । ଛାତ୍ରଙ୍କୁ ଆଳସ୍ୟ ଛୁଇଁବା ଉଚିତ ନୁହେଁ ।

୧୯ । ତ୍ୟାଗପୂତ ମନୋବୃତ୍ତି ନେଇ ସେମାନେ ପ୍ରତ୍ୟେକ ସୂତା କାଟିବା ଉଚିତ ।

୨୦ । ସମୟ ଆସିଲେ ଦେଶର ମୁକ୍ତି ପାଇଁ ଛାତ୍ରସମାଜ ନିଜକୁ ଉତ୍ସର୍ଗ କରିବା ନିମନ୍ତେ ପ୍ରସ୍ତୁତ ହେବା ଉଚିତ ।

୨୧ । ଛାତ୍ରମାନେ କାର୍ଯ୍ୟରେ ତଥା ଆଚରଣରେ ନିୟମିତ ହେବା ଉଚିତ ।

୨୨ । ରାଜନୈତିକ ଧର୍ମଘଟରେ ଭାଗ ନେବା ଛାତ୍ରମାନଙ୍କ ପକ୍ଷରେ ଅନୁଚିତ ।

---

# ଜନ୍ମ ନିୟନ୍ତ୍ରଣ

୧ । ଆମ ଦେଶ ପାଇଁ ଜନ୍ମ ନିୟନ୍ତ୍ରଣ ନିହାତି ଦରକାର; କିନ୍ତୁ ଏହା ସଂଯମ ବା ଆତ୍ମ ନିୟନ୍ତ୍ରଣ ଦ୍ୱାରା କରାଯିବା ଉଚିତ ।

୨ । କୃତ୍ରିମ ଉପାୟରେ ଜନ୍ମ ନିୟନ୍ତ୍ରଣକୁ ମୁଁ ଆଦୌ ପସନ୍ଦ କରେ ନାହିଁ ।

୩ । କୃତ୍ରିମ ଉପାୟରେ ଜନ୍ମ ନିୟନ୍ତ୍ରଣ କରିବା ମହା ପାପ । ଏହା ଦ୍ୱାରା ମଧ୍ୟ ଶାରୀରିକ କ୍ରିୟାପ୍ରକ୍ରିୟା ବାଧାପ୍ରାପ୍ତ ହୁଏ ।

୪ । ଜନ୍ମ ନିୟନ୍ତ୍ରଣ ପାଇଁ ସ୍ୱଳ୍ପ ବୟସରୁ ବିବାହ ପ୍ରଥା ବନ୍ଦ କରାଯିବା ଉଚିତ ।

୫ । ବିବାହିତ ବ୍ୟକ୍ତି ପକ୍ଷରେ ବ୍ରହ୍ମଚର୍ଯ୍ୟ ପାଳନ ଜନ୍ମ ନିୟନ୍ତ୍ରଣର ସହାୟକ ।

୬ । ଜନ୍ମ ନିୟନ୍ତ୍ରଣ ପାଇଁ ଅସ୍ତ୍ରୋପଚାରର ଅମାନୁଷିକତା ଛଡ଼ା ଅନ୍ୟ କିଛି ନୁହେଁ ।

୭ । କୃତ୍ରିମ ଉପାୟରେ ଜନ୍ମ ନିୟନ୍ତ୍ରଣ ବା ଜନ୍ମ ନିରୋଧକୁ ମୁଁ ଆତ୍ମହତ୍ୟା ମୂଳକ କାର୍ଯ୍ୟ ବୋଲି ଆଖ୍ୟା ଦେଇଥାଏ ।

୮ । ସ୍ତ୍ରୀ, ସ୍ୱାମୀ ଉଭୟଙ୍କ ବୁଝାମଣାରେ ଜନ୍ମ ନିୟନ୍ତ୍ରଣ କରାଯିବା ଉଚିତ ।

---

# ଜାତୀୟତାବାଦ

୧ । ମୋ ଜାତୀୟତାବାଦ ହେଉଛି ଧର୍ମର ବଳ ।

୨ । ମୋ ଜାତୀୟତାବାଦରେ ଜାତି-ବିଦ୍ୱେଷର କୌଣସି ସ୍ଥାନ ନାହିଁ ।

୩ । ମୋ ଜାତୀୟତାବାଦ ବଳିଷ୍ଠ ହେଲେ ହେଁ ଉଦାର । କୌଣସି ଜାତି ବା ବ୍ୟକ୍ତିର ଅନିଷ୍ଟ କରିବା ପାଇଁ ଏହା କଳ୍ପିତ ନୁହେ ।

———

## ଜ୍ଞାନ

୧ । ଜ୍ଞାନର କୌଣସି ସୀମାନାହିଁ ।

୨ । ଜ୍ଞାନବିନା ସ୍ୱତନ୍ତ୍ରତା ମିଳେନାହିଁ ।

୩ । ଜ୍ଞାନ, ଉପାସନା ଓ କର୍ମ ଈଶ୍ୱର ପ୍ରାପ୍ତିର ୩ଟି ବିଭିନ୍ନ ମାର୍ଗ ନୁହନ୍ତି । ଏହି ତିନୋଟି ମିଶିଲେ ଈଶ୍ୱର ପ୍ରାପ୍ତିର ଗୋଟିଏ ମାର୍ଗ ହୋଇଥାଏ ।

୪ । ଜ୍ଞାନର ଅର୍ଥ ହେଉଛି ଋଷାଣିତ ବିବେକ ।

୫ । ଜ୍ଞାନବିନା ଆମ୍ଭେମାନେ ଗୋଟିଏ ପଦ ଅଗ୍ରସର ହୋଇ ପାରିବା ନାହିଁ ।

୬ । ଜ୍ଞାନ ସହିତ ଅଭିମାନ ରହିଲେ, ଜ୍ଞାନର କିଛି ମୂଲ୍ୟ ରହେ ନାହିଁ ।

୭ । ଜ୍ଞାନ ଚରିତ୍ର ପାଇଁ ବିନିଯୁକ୍ତ ହେବା ଉଚିତ—ଜ୍ଞାନ ସାଧନ ଓ ଚରିତ୍ର ସାଧ୍ୟ ଅଟେ ।

୮ । ମାନବସମାଜକୁ କଲ୍ୟାଣ ନମିଳି ଯଦି କଷ୍ଟ ମିଳେ ତାହା ହେଲେ ସେ ଜ୍ଞାନ ନିରର୍ଥକ ।

—✳—

## ତପସ୍ୟା

୧ । ତପସ୍ୟା ହେଉଛି ଜୀବନର ସବୁଠାରୁ ବଡ଼କଳା ।

୨ । ତପ ବିନା ତ୍ୟାଗ ମୂଲ୍ୟ ହରାଇ ବସେ ।

୩ । ତପ ଦ୍ୱାରା କାୟା ପବିତ୍ର ହୁଏ ।

୪ । ତପ ହେଉଛି ଶୁଦ୍ଧିର ସାଧନ ।

୫ । ତପ ଦ୍ୱାରା ସଂସାରରୁ ସବୁଠାରୁ ବଡ଼ ସିଦ୍ଧି ମିଳିଥାଏ ।

୬ । ତପ ଦ୍ୱାରା ମଣିଷ ମନ ଉଚ୍ଚ ସ୍ତରରେ ପହଞ୍ଚି ପାରେ ।

୭ । ପ୍ରାଚୀନ କାଳରେ ସମସ୍ତେ ତପର ମହତ୍ତ୍ୱ ସ୍ୱୀକାର କରୁଥିଲେ । ଆଜି ତପର ଅଭାବରେ ଜୀବନ ପଥ ସମସ୍ୟା କଣ୍ଟକିତ ହୋଇ ଉଠୁଅଛି ।

୮ । କେବଳ ସାଧନା ଓ ଚରିତ୍ର ବଳ ଉପରେ ତପସ୍ୟା କରାଯାଇ ପାରେ ।

—ଃ୦ଃ—

## ତ୍ୟାଗ

୧ । ତ୍ୟାଗ ହେଉଛି ଏକ ସାତ୍ତ୍ୱିକ ଆନନ୍ଦ ।

୨ । ବାଧ୍ୟ ବାଧକ ହୋଇ କରିଥିବା ତ୍ୟାଗ ସ୍ଥାୟୀ ନୁହେଁ ।

୩ । ତ୍ୟାଗ ପରେ ପଶ୍ଚାତାପ କରିବା ଉଚିତ ନୁହେଁ ।

୪ । ତ୍ୟାଗ ବିନା ଦେଶ-ଭକ୍ତି ଅସମ୍ଭବ ।

୫ । ତ୍ୟାଗ ପଛରେ ଯେଉଁ ସଦ୍‌ଭାବନା ଉଜ୍ଜୀବିତ ଥାଏ ତାହାର ବିକାଶ ଧୀରେ ଧୀରେ ହୁଏ ।

୬ । ଯେ ପର୍ଯ୍ୟନ୍ତ ସଂସାରରେ ବୁଦ୍ଧି ଓ ସମ୍ପତ୍ତିର ବିଷମତା କାଏମ୍ ରହିଛି ଓ କେବେ ହେଲେ ସମାନ ହୋଇ ପାରିନାହିଁ,

ସେ ପର୍ଯ୍ୟନ୍ତ ତ୍ୟାଗର ମହତ୍ତ୍ୱ ପ୍ରସାରିତ ହେବା ଅସମ୍ଭବ ।

୭ । ତ୍ୟାଗ ନିଜର କୁଟୁମ୍ବ, ପରିଜନ-ପୁରଜନଙ୍କ ପାଇଁ ସମସ୍ତେ କରିଥାନ୍ତି; କିନ୍ତୁ ଦୁନିଆର ସମୃଦ୍ଧ ବିକାଶ ପାଇଁ ଯେ ତ୍ୟାଗକରେ ସେହିଁ ପ୍ରଶଂସନୀୟ ।

୮ । ଯାହା ମନରେ ତ୍ୟାଗଭାବ ନାହିଁ, ସେ ସେବା ମୂଳକ କାର୍ଯ୍ୟ କରିବା ଅସମ୍ଭବ ।

୯ । ତ୍ୟାଗ ବିନା ମଣିଷର ବିକାଶ ହୋଇ ପାରେ ନାହିଁ ।

—ঃ০ঃ—

## ଦୟା

୧ । ଦୟା କେବେ ଅହିଂସାର ବିରୋଧୀ ନୁହେଁ । ଯଦି ବିରୋଧୀ ହୁଏ, ତାହା ହେଲେ ତା'କୁ ଦୟା କୁହାଯାଇ ନ ପାରେ ।

୨ । ଦୟା ହେଉଛି ମଣିଷର କୋମଳତମ ଭାବନାର ପ୍ରତୀକ । ଯାହା ପାଖରେ ଦୟା ନାହିଁ, ସେ କଦାପି ବିନୟୀ ନୁହେଁ ।

୩ । ଦୟା ହେଉଛି ଧର୍ମର ମୂଳ ଓ ମାନବୀୟ ଗୁଣର ଶୃଙ୍ଗାର ପରି ।

୪ । ନିର୍ଦ୍ଦୟ ବ୍ୟକ୍ତି ମାନବତାର ଆନୁଷଙ୍ଗିକ ସଦ୍‌ଗୁଣର ଅଧିକାରୀ ହୋଇ ନ ପାରେ ।

୫ । ଯେଉଁଠାରେ ଦୟା ନାହିଁ, ସେଠାରେ ଅହିଂସା ନାହିଁ ।

୬ । ଦୟା ହେଉଛି ସଦ୍‌ଗୁଣମାନଙ୍କ ମଧ୍ୟରେ ଶ୍ରେଷ୍ଠତମ ।

୭ । ଦୟା, ସଂସାରରେ ଯେତେ ଧର୍ମ ଅଛି, ସେମାନଙ୍କର ମୂଳ ଶିକ୍ଷା ।

———

# ଦେଶ ଭକ୍ତି

୧ । ଦେଶ ଭକ୍ତିର ଲକ୍ଷ୍ୟ ବ୍ୟାପକ ଭାବରେ ମଣିଷର ହିତଚିନ୍ତା କରିବା ନୁହେଁ ।

୨ । ମୁଁ ଯେଉଁ ଦେଶ ଭକ୍ତି ଶିଖାଉଛି, ସେଥିରେ ବ୍ୟକ୍ତି ପରିବାର ପାଇଁ, ପରିବାର ଗାଁ ପାଇଁ, ଗାଁ ଜିଲ୍ଲା ପାଇଁ, ଜିଲ୍ଲା ରାଜ୍ୟ ପାଇଁ, ରାଜ୍ୟ ଦେଶ ପାଇଁ ଜୀବନ ପାତ କରିବେ ।

୩ । ଅନ୍ୟ ରାଜ୍ୟକୁ ବିପଦରେ ପକାଇ ଲୋକେ ବଡ଼ପଣ ପାଇଁ ଯେଉଁ ଦେଶଭକ୍ତି ଦେଖାଇଥାନ୍ତି, ତାହା ସର୍ବଦା ତ୍ୟାଗ କରିବା ଉଚିତ ।

୪ । ଦେଶ ଭକ୍ତି ମଣିଷର ହେଉଛି ଏକ ପ୍ରଧାନ ମୌଳିକ ଗୁଣ । ଏହା ବ୍ୟତୀତ ସଂସାରରେ ମୁଣ୍ଡଟେକି ଚାଲିବା ମଣିଷ ପକ୍ଷରେ ଅସମ୍ଭବ ।

୫ । ମଣିଷ ନିଜ ଦେଶ ଛାଡ଼ି ଯାଇ ଯେତେବେଳେ ଦୂରରେ ରହେ ସେତେବେଳେ ତା ମନରେ ଠିକ୍ ଦେଶ ଭକ୍ତି ଜାତ ହୋଇଥାଏ ।

୬ । ସଂସାରରେ ଦେଶ ଭକ୍ତି ଦ୍ୱାରା ସ୍ୱାଧୀନତାର ମାର୍ଗ ପ୍ରଶସ୍ତ ହୋଇଥାଏ ।

୭ । ଦେଶ ଭକ୍ତିର ବର୍ତ୍ତମାନ ଭାବନା, ଆମ୍ଭେମାନେ ପାଶ୍ଚାତ୍ୟ ଦେଶମାନଙ୍କରୁ ଶିଖିଅଛୁ ।

—*—

# ଧର୍ମ

୧ । ଯଦି ଧର୍ମ ଈଶ୍ୱରଙ୍କର ନହୋଇ ସଇତାନ୍‌ର ହୁଏ, ତାହାହେଲେ ତାହା କୌଣସି କାର୍ଯ୍ୟରେ ଆସେ ନାହିଁ ।

୨ । ଧର୍ମହୀନ ରାଜନୀତି ଫାଶି ସଦୃଶ୍ୟ । ଏହା ଆତ୍ମାକୁ ନାଶ କରିଦିଏ ।

୩ । ଧର୍ମର କିଛି ଦୋଷନାହିଁ, ଦୋଷସବୁ ମଣିଷର ।

୪ । ବ୍ୟାବହାରିକ କାର୍ଯ୍ୟକଳାପରେ ଯେ ସହାୟକ ନହୁଏ, ସେ ଧର୍ମ ନୁହେଁ ।

୫ । ଅଧର୍ମ ଉପାୟରେ ଅର୍ଥୋପାର୍ଜନ ସର୍ବଦା ତ୍ୟାଜ୍ୟ । ଧର୍ମ ରହିତ ରାଜ୍ୟସତ୍ତା ରାକ୍ଷସୀ ପରି ।

୬ । ଯେଉଁ ଧର୍ମ ସତ୍ୟ ଓ ଅହିଂସାର ବିରୋଧୀ, ସେ ଧର୍ମନୁହେଁ ।

୭ । ଧର୍ମର ପରୀକ୍ଷା ଦୁଃଖରେ ହୋଇଥାଏ ।

୮ । ଧର୍ମର ଅଙ୍ଗ ବୈରାଗ୍ୟ, ବୈଭବ ନୁହେଁ ।

୯ । ମୁଁ ଧର୍ମରେ ଅନ୍ୟ ରାଜନୀତିର କଳ୍ପନା କରିପାରେ ନାହିଁ ।

୧୦ । ଧର୍ମକୁ ସମାଜରୁ ବହିଷ୍କାର କରିବା ବନ୍ଧ୍ୟା ଗର୍ଭରୁ ପୁତ୍ର ଜାତକରିବା ପରି ଅସମ୍ଭବ ।

୧୧ । ଧର୍ମ ଶିଖାଇ ଥାଏ ଯେ ସମସ୍ତଜୀବ ଅନ୍ତିମରେ ଏକ ହୁଅନ୍ତି ।

୧୨ । ଧର୍ମ କୌଣସି ସଙ୍କୁଚିତ ସଂପ୍ରଦାୟ କିମ୍ବା କୌଣସି ବାହ୍ୟାଚାରରେ ସୀମାବଦ୍ଧ ନୁହେଁ । ଏହାର ଅର୍ଥ ହେଉଛି ବିଶାଳ, ବ୍ୟାପକ – ଈଶ୍ବରଙ୍କ ପ୍ରତି ମୋର ଶ୍ରଦ୍ଧା ଓ ସତ୍ୟ ତଥା ଅହିଂସା ପ୍ରତି ପୂର୍ଣ୍ଣ ଅନୁରକ୍ତି ।

୧୩ । ଉତ୍କଟ ଶ୍ରଦ୍ଧାର ନାମ ହେଉଛି ଧର୍ମ ।

୧୪ । ଗୋଟିଏ ଧର୍ମର ବିଶେଷତ୍ଵ, ଅନ୍ୟଗୋଟିଏ ଧର୍ମର ବିଶେଷତ୍ଵର ପ୍ରତିକୂଳ ହୋଇ ନପାରେ କିମ୍ବା ସର୍ବମାନ୍ୟ ସିଦ୍ଧାନ୍ତର ବିରୋଧ କରିନ୍ନପାରେ ।

୧୫ । ଧର୍ମଶାସ୍ତ୍ରର ବଚନକୁ ସତ୍ୟରୂପକ ନିହାଣ ଓ ଦୟାରୂପକ ହାତୁଡ଼ିରେ ପରୀକ୍ଷା କରାଯାଏ ।

୧୬ । ଉତ୍ସାହହୀନ ଧର୍ମର ମୂଲ୍ୟ ନାହିଁ ।

୧୭ । ସଂକଟ ସମୟରେ ଧର୍ମ ମଣିଷକୁ ଉଦ୍ଧାର କରିଥାଏ ।

୧୮ । ବାଲ୍ୟକାଳରୁ ମନରେ ଧର୍ମ ସଂସ୍କାର ଆଣିବାକୁ ଚେଷ୍ଟା କରାଗଲେ ମଣିଷ ମନରେ ଶ୍ରଦ୍ଧା, ବିଶ୍ୱାସ ଆଦି ସଦ୍‌ଗୁଣର ବିକାଶ ହୋଇଥାଏ ।

୧୯ । ଧର୍ମ ଭଗବାନଙ୍କ ନିକଟରେ ପହଞ୍ଚାଇବା ପାଇଁ ଏକ ସେତୁ ସ୍ୱରୂପ ।

୨୦ । ସାରା ଦୁନିଆଁରେ ଧର୍ମଶାସ୍ତ୍ର ଉଦ୍ଧାର କରାଗଲେ ମଧ୍ୟ ମିଥ୍ୟାର ସମର୍ଥନ ମିଳିନଥାଏ ।

୨୧ । ଧର୍ମ ମଣିଷ ମଣିଷ ଭିତରେ ପ୍ରତିବନ୍ଧକ ଆଣିନଥାଏ, ବରଂ ମିଳନର ସେତୁ ବାନ୍ଧିଥାଏ ।

୨୨ । ଆତ୍ମଜ୍ଞାନ ପ୍ରାପ୍ତି ହିଁ ମୋ'ର ସବୁଠାରୁ ବଡ଼ ଧର୍ମ ।

୨୩ । ଯଦି ସମୟ ଆସେ, ତାହାହେଲେ ଧନ, ମାନ, କୁଟୁମ୍ବ ଓ ପ୍ରାଣ ମଧ୍ୟ ତ୍ୟାଗ କରାଯାଇ ପାରେ; କିନ୍ତୁ ଧର୍ମ କଦାପି ତ୍ୟାଗ କରାଯାଇ ପାରେନା ।

୨୪ । ସାରା ସଂସାର ଓ ମଣିଷ ଜାତିପାଇଁ ଧର୍ମ ହେଉଛି ଏକ; କିନ୍ତୁ ଏହାର ନାମାନ୍ତର କରାଯାଇ ଅଛି ମାତ୍ର ।

୨୫ । ଧର୍ମହୀନ ମଣିଷ ଆତ୍ମାଲି ନଥିବା ନାହାପରି ।

———

## ଧର୍ମସ୍ଥାନ

୧ । ଆମଦେଶରେ ଥିବା ଧର୍ମ ସ୍ଥାନ ଗୁଡ଼ିକ ଭ୍ରଷ୍ଟାଚାରର କେନ୍ଦ୍ର ।

୨ । ଧର୍ମ ସ୍ଥାନ ଗୁଡ଼ିକ ହରିଜନଙ୍କ ପାଇଁ ମଧ୍ୟ ଖୋଲି ରହିବା ଉଚିତ ।

୩ । ସବୁ ଧର୍ମାବଲମ୍ବୀମାନଙ୍କର ଧର୍ମସ୍ଥାନକୁ ପବିତ୍ର ମଣିବା ଉଚିତ ।

୪ । ଧର୍ମ ସ୍ଥାନରୁ ଆୟ ୍ନ ଯଦି ରାଷ୍ଟ୍ରନିର୍ମାଣରେ ଲଗନ୍ତା, ତାହାହେଲେ ଖୁବ୍ ଭଲ ହୁଅନ୍ତା ।

୫ । ଭାରତ ପକ୍ଷରେ ବର୍ତ୍ତମାନ ଧର୍ମ ସ୍ଥାନ ଗୁଡ଼ିକୁ ସଂସ୍କାର ରୂପ ଦେବା ଆବଶ୍ୟକ ।

୬ । ଧର୍ମସ୍ଥାନର ସମ୍ପତ୍ତି ଶିକ୍ଷା, ସଂସ୍କୃତି ଓ ସତ୍କାର୍ଯ୍ୟରେ ଲଗିଲେ ଦେଶର ବହୁତ ଉପକାର ହୁଅନ୍ତା ।

---

## ନମ୍ରତା

୧ । ନମ୍ରତା ମଣିଷର ହେଉଛି ଏକ ପ୍ରଧାନ ଭୂଷଣ ।

୨ । ନମ୍ରତାକୁ ଅନେକ ବିଦ୍ୱାନ ବ୍ୟକ୍ତି ବ୍ରତ ବୋଲି କହିଥାନ୍ତି ।

୩ । ନମ୍ରତାକୁ ମପାଯାଇ ପାରେନା ।

୪ । ନମ୍ର ମଣିଷ ନିଜର ଏହି ଗୁଣକୁ ଚିହ୍ନିପାରେ ନା ।

୫ । ସତ୍ୟ ଯେ ପାଳନ କରେ ତା' ନିକଟରେ ନମ୍ରତା ନିହାତି ଆବଶ୍ୟକ ।

୬ । ନମ୍ରତା ଅହିଂସାର ଅଙ୍ଗୀଭୂତ ।

୭ । ନମ୍ରତା ଅଭ୍ୟାସ ଦ୍ୱାରା ଆସେ, ଖୁସାମତ ଦ୍ୱାରା ନୁହେଁ ।

୮ । ମୋ ନମ୍ରତାର ବସ୍ତୁତ ବିଷୟରେ ମୁଁ ଜାଣେନା ।

୯ । କଠୋରତା ଦ୍ୱାରା ଯେଉଁ କାର୍ଯ୍ୟ ଯେତେ ସମୟରେ ହୁଏ, ନମ୍ରତା ଦ୍ୱାରା ତାଠାରୁ ଶୀଘ୍ର ହୋଇଥାଏ ।

# ନାରୀ

୧ । ନାରୀ ଅବଳା ନୁହେଁ । ଜଗତରେ ସମସ୍ତ ବଳ ନାରୀଠାରେହିଁ ନିହିତ ଅଛି । ପୁରୁଷ ଅପେକ୍ଷା ନାରୀ ଧର୍ମ ଓ ପ୍ରେମବଳରେ ଅଧିକ ବଳୀୟାନ ।

୨ । ଯେ ପର୍ଯ୍ୟନ୍ତ ନାରୀ ସମାଜର ଉନ୍ନତି ବିଧାନ କରାଯାଇ ନାହିଁ, ସେ ପର୍ଯ୍ୟନ୍ତ ପୃଥିବୀର ଅଗ୍ରଗତି ଅସମ୍ଭବ । କାରଣ ଗୋଟିଏ ପକ୍ଷୀ ଗୋଟିଏ ଡେଣାରେ ଉଡ଼ିପାରେ ନାହିଁ ।

୩ । ମୋ ମତରେ ପ୍ରତ୍ୟେକ ଜାତି ନାରୀମାନଙ୍କୁ ସହାନୁଭୂତି ଓ ସମ୍ମାନ ପ୍ରଦର୍ଶନ କରିବା ଉଚିତ ।

୪ । ନାରୀ ପ୍ରଣୟିନୀ ବା ପତ୍ନୀ ହେବା ପୂର୍ବରୁ ପ୍ରଥମେ ସନ୍ତାନଙ୍କର ମା ।

୫ । ନାରୀ ଧର୍ମ ପଥର କଳଙ୍କ ନୁହେଁ କିମ୍ବା ବିଳାସର ସାମଗ୍ରୀ ନୁହେଁ । ସେ ପୁରୁଷଠାରୁ ତ୍ୟାଗ ଗୁଣରେ ଶ୍ରେଷ୍ଠ ଓ ପୁରୁଷ ତା'ଠାରୁ ପାଶବିକତାରେ ବଳୀୟାନ ।

୬ । ଜୀବନର ପ୍ରତ୍ୟେକ କ୍ଷେତ୍ରରେ ନାରୀ ପୁରୁଷ ସହିତ ପ୍ରତିଯୋଗିତା କରିବା ଉଚିତ ନୁହେଁ । ନାରୀର ପ୍ରତିଯୋଗିତା ଶକ୍ତି ଥିଲେ ମଧ୍ୟ ପୁରୁଷକୁ ଅନୁକରଣ କଲେ, ତା'ର ସେବା ସେତେ ମହତ୍ତ୍ୱ ହୋଇ ପାରିବ ନାହିଁ ।

୭ । ଯେ ପର୍ଯ୍ୟନ୍ତ ନାରୀର ଆଇନଗତ ଅଧିକାର ପୁରୁଷ ସହିତ ସମାନ ନ ହୋଇଛି, ସେ ପର୍ଯ୍ୟନ୍ତ ଭାରତର ଉନ୍ନତି ଅସମ୍ଭବ ।

୮ । ସୁନା, ରୂପା ଅଳଙ୍କାରରେ ନାରୀର ଶୋଭା ବଢ଼େ ନାହିଁ । ନିଜର ସଚ୍ଚରିତ୍ର ଓ ସାଧୁତା ହିଁ ପ୍ରକୃତ ଅଳଙ୍କାର ।

୯ । ଯେ ପର୍ଯ୍ୟନ୍ତ ପୁତ୍ରଲାଭପରି କନ୍ୟା ଲାଭରେ, ଭାରତରେ ପିତାମାତା ଆନନ୍ଦିତ ନ ହୋଇଛନ୍ତି, ସେ ପର୍ଯ୍ୟନ୍ତ ନାରୀଜାତିକୁ ସମ୍ମାନ ଦେବାରେ ଆମେ ଅବହେଳା କରୁଛୁ ।

---

## ନିୟମିତତା

୧ । ସୂର୍ଯ୍ୟଙ୍କର ନିୟମିତତା ଦୁନିଆଁରେ ଅଦ୍ୱିତୀୟ ।

୨ । ନିୟମିତତା ବିନା ଜୀବନ ଅସ୍ତବ୍ୟସ୍ତ ହୋଇ ପଡ଼େ ।

୩ । ଶିଶୁକୁ ନିୟମିତତା ଶିକ୍ଷା ଦେଲେ, ସେ କ୍ରମେ ସମୟାନୁବର୍ତ୍ତୀ ହୋଇ କାର୍ଯ୍ୟ କରିବାରେ ଅଭ୍ୟସ୍ତ ହୁଏ ।

୪ । ଯଦି କେହି ନିୟମିତ ରୂପେ ନିଜ କାର୍ଯ୍ୟ ନ କରେ, ତାହାହେଲେ ସେ କଦାପି ସଫଳତା ହାସଲ କରିପାରେ ନାହିଁ ।

୫ । ନିୟମିତତା ସାଫଲ୍ୟର ଜନନୀ ।

୬ । ନିୟମିତତା ଜୀବନର ଏକ କଷଟି ପଥର ସଦୃଶ୍ୟ ।

୭ । ନିୟମିତତା ଦ୍ୱାରା ମଣିଷ ବଡ଼ ବଡ଼ କାର୍ଯ୍ୟ ସମ୍ପାଦନ କରିପାରେ ।

୮ । ନିୟମିତତା ହେଉଛି ଏକ ଶିକ୍ଷାର ସାମଗ୍ରୀ—ଏହା ସ୍ୱଭାବଗତ ନୁହେଁ—ଅଭ୍ୟାସଗତ ।

---

## ନିୟନ୍ତ୍ରଣ

୧ । ସବୁ ନିୟନ୍ତ୍ରଣଠାରୁ ଆତ୍ମନିୟନ୍ତ୍ରଣ ବଡ଼ ।

୨ । ମୌନ ଆଧ୍ୟାତ୍ମିକ ଭାବ ନିୟନ୍ତ୍ରଣ ଏକ ଅଙ୍ଗସ୍ୱରୂପ ।

୩ । ନିୟନ୍ତ୍ରଣର ଉପଯୋଗ ବୁଦ୍ଧିମତ୍ତା ପୂର୍ବକ ହେବା ଉଚିତ ।

---

## ପୁସ୍ତକ

୧ । ଇଂରାଜୀ ପୁସ୍ତକମାନଙ୍କ ମଧ୍ୟରେ ମୋତେ ସବୁଠାରୁ 'ପିଲ୍‌ଗ୍ରିମ୍‌ସ ପ୍ରୋଗ୍ରେସ' ଭଲ ଲାଗେ ।

୨ । 'ନିଉ ଟେଷ୍ଟାମେଣ୍ଟ' ମୋ ମତରେ ସର୍ବୋତ୍ତମ ଉପଦେଶ ଗ୍ରନ୍ଥ ।

୩ । ମୋ ପକ୍ଷରେ ତୁଳସୀ ରାମାୟଣ (ରାମଚରିତମାନସ) ଭକ୍ତିରସର ସର୍ବୋତ୍ତମ ଗ୍ରନ୍ଥ ।

୪ । ପୁସ୍ତକର ମୂଲ୍ୟ ରତ୍ନଠାରୁ ଅଧିକ । ରତ୍ନ ବାହାରକୁ ଚକ୍‌ ଚକ୍‌ ଦିଶିଥାଏ; କିନ୍ତୁ ପୁସ୍ତକର ଆଭ୍ୟନ୍ତରୀଣ ଉଜ୍ଜ୍ୱଳତା ସର୍ବଦା ସ୍ୱୀକାର୍ଯ୍ୟ ।

୫ । ପୁସ୍ତକ ଅଧ୍ୟୟନଦ୍ୱାରା ମଣିଷର ମାନସିକ ପ୍ରବୃତ୍ତି ବିକଶିତ ହୋଇଥାଏ ।

୬ । ଜ୍ଞାନ ପ୍ରସାର ପାଇଁ ପୁସ୍ତକ ଅଧ୍ୟୟନ ହେଉଛି ସବୁଠାରୁ ସୁଗମ ପଥ । ତେଣୁ ପ୍ରତି ଗ୍ରାମରେ ଗୋଟିଏ ଗୋଟିଏ ପୁସ୍ତକାଳୟ ରହିବା ଉଚିତ ।

---

## ପତ୍ରିକା

୧ । ପତ୍ରିକାର ମୁଖ୍ୟ ଧ୍ୟେୟ ସେବା ହେବା ଉଚିତ ।

୨ । ଲୋକଭାବନା ହୃଦୟଙ୍ଗମ କରି ପତ୍ରିକାରେ ଅଭିବ୍ୟକ୍ତ କରାଯିବା ଉଚିତ ।

୩ । ରାଜ୍ୟରେ ଯେଉଁ ତ୍ରୁଟିମାନ ଦେଖାଯାଉଛି, ତାହା ସବୁ ପ୍ରକାଶ କରିବା ପାଇଁ ପତ୍ରପତ୍ରିକାର ଆବଶ୍ୟକତା ରହିଛି ।

୪ । ଲୋକମତ ସୃଷ୍ଟି ପାଇଁ ପତ୍ରିକା ଏକ ପ୍ରଧାନ ଅଙ୍ଗ ।

୫ । ମୋ ବ୍ୟକ୍ତିଗତ ଧ୍ୟେୟର ପୂର୍ତ୍ତି ପାଇଁ ପତ୍ରିକା ପ୍ରକାଶ କରିଥାଏ ।

୬ । ଦେଶରେ ଯେଉଁସବୁ ମିଥ୍ୟା ସମ୍ବାଦବାହୀ ପତ୍ରିକାମାନ ପ୍ରକାଶ ପାଉଛି, ସେଗୁଡ଼ିକୁ ବନ୍ଦ କରିଦେବା ପାଇଁ ମୁଁ ଇଚ୍ଛାକରେ ।

୭ । ପତ୍ରିକାକୁ 'ଚତୁର୍ଥ ରାଜ୍ୟ' କୁହାଯାଏ । ଏହା ଏକ ଶକ୍ତି । ଏହି ଶକ୍ତିର ଅସଦ୍ ଉପଯୋଗ ହେଉଛି ଏକ ଅପରାଧ ।

୮ । ପତ୍ରିକା ପ୍ରକାଶନ ହେଉଛି ଏକ ସୁନ୍ଦର କଳା । ଆଜକାଲି ଏଥିରେ ଲୋକହିତ ପାଇଁ ଚେଷ୍ଟା ଖୁବ୍ କମ୍ ହେଉଅଛି ।

---

## ପଞ୍ଚାୟତ

୧ । ପଞ୍ଚାୟତରାଜ ମୋ ମତରେ ଏକ ପୂର୍ଣ୍ଣ ଗଣତାନ୍ତ୍ରିକ ସଂସ୍ଥା ।

୨ । ପଞ୍ଚାୟତ ରାଜ ବ୍ୟବସ୍ଥାରେ ପ୍ରତି ଗ୍ରାମ ସ୍ୱାବଲମ୍ବୀ ଓ ସ୍ୱତନ୍ତ୍ର ହେବା ଉଚିତ ।

୩ । ପଞ୍ଚାୟତ ରାଜର ସମସ୍ତ କାର୍ଯ୍ୟକଳାପ ସମବାୟ ପଦ୍ଧତି ଉପରେ ଆଧାରିତ ହେବା ଉଚିତ ।

୪ । ପଞ୍ଚାୟତରାଜ ଭାରତର ଏକ ପ୍ରାଚୀନତମ ସଂସ୍ଥା । ଦେଶରେ ଏହାର ପୁନଃ ପ୍ରଚଳନ କିଛି ନୂଆ କଥା ନୁହେଁ ।

୫ । ପଞ୍ଚାୟତ ଦ୍ୱାରା ଗାଁ ମାନଙ୍କରେ ବଡ଼ ବଡ଼ କାମ କରାଯାଇ ପାରେ ।

୬ । ପଞ୍ଚାୟତ ଜରିଆରେ ଗ୍ରାମର କୃଷିକର୍ମ ସଂପାଦିତ ହେଲେ, କୃଷକ ଅଧିକ ସ୍ୱାବଲମ୍ବୀ ଓ ସୁଖୀ ହେବ ।

୭ । ଗାଁ ବାଲଙ୍କ ଉଦ୍ଧାର କେବଳ ପଞ୍ଚାୟତରାଜ ଦ୍ୱାରା ସମ୍ଭବପର ।

୮ । ପଞ୍ଚାୟତ ବ୍ୟବସ୍ଥା ଦ୍ୱାରା ଗ୍ରାମ ଲୋକଙ୍କର ସ୍ୱାର୍ଥର ଚିନ୍ତା ଅପସରି ଯିବ ଓ ସଂଗଠନ ପାଇଁ ଭାବନା ବଢ଼ିବ ।

୯ । ପଞ୍ଚାୟତର ଶକ୍ତି ଯେତିକ ବେଶି ହେବ, ଲୋକମାନଙ୍କର ଅବସ୍ଥା ସେତିକ ଉନ୍ନୀତ ହେବ ।

୧୦ । ପଞ୍ଚାୟତମାନେ ଲୋକପ୍ରିୟ ହେବା ସଙ୍ଗେ ସଙ୍ଗେ ନିଜର ନୈତିକ ସମ୍ମାନ ବଜାୟ ରଖିବା ଉଚିତ ।

୧୧ । ପଞ୍ଚାୟତ ଗୁଡ଼ିକ ସୁଷ୍ଠୁରୂପେ ପରିଚାଳିତ ହେଲେ ଗ୍ରାମ-ବାସୀଙ୍କର ଶିକ୍ଷାର ମାନ ଉନ୍ନୀତ ହେବ ।

୧୨ । ଯଦି ଆମ୍ଭେମାନେ ପଞ୍ଚାୟତ ରାଜର ସ୍ୱପ୍ନ ଦେଖୁଁ, ତାହା ହେଲେ ସର୍ବନିମ୍ନସ୍ତରରେଥିବା ଭାରତୀୟଙ୍କୁ ସର୍ବୋଚ୍ଚସ୍ତରରେ ଥିବା ଶାସକଙ୍କ ସହିତ ସମାନ କରିବାକୁ ହେବ ।

୧୩ । ସାଧୁତା ଓ ଶିଳ୍ପର ବିକାଶ କରିବା ହେଉଛି ପଞ୍ଚାୟତର କର୍ତ୍ତବ୍ୟ ।

୧୪ । କଳିତକରାଳ ନ କରିବାକୁ ଗ୍ରାମବାସୀଙ୍କୁ ଶିକ୍ଷାଦେବା ପଞ୍ଚାୟତ କର୍ତ୍ତବ୍ୟର ମଧ୍ୟ ଅଙ୍ଗୀଭୂତ ।

୧୫ । ଗ୍ରାମର ଶାସନ ପାଞ୍ଚଜଣ ଶିକ୍ଷିତ ସାବାଳକ ଗ୍ରାମବାସୀ (ସ୍ତ୍ରୀ ଓ ପୁରୁଷ) ଙ୍କ ଉପରେ ନ୍ୟସ୍ତ ହେବ, ଯେଉଁମାନେ କି ଗ୍ରାମବାସୀଙ୍କ ଦ୍ୱାରା ନିର୍ବାଚିତ ହେବେ ।

---

# ପ୍ରାର୍ଥନା

୧ । ପ୍ରାର୍ଥନାର ଶକ୍ତି ଅସୀମ ।

୨ । ପ୍ରାର୍ଥନା ହେଉଛି ଆତ୍ମଶୁଦ୍ଧି ଓ ଆତ୍ମ ନିୟନ୍ତ୍ରଣର ଆହ୍ୱାନ ।

୩ । ପ୍ରାର୍ଥନା ଧର୍ମର ପ୍ରାଣ ସ୍ୱରୂପ ।

୪ । ପ୍ରାର୍ଥନା ବିନା ଆନ୍ତରିକ ଶାନ୍ତି ମିଳେନା ।

୫ । ଦିନର କାର୍ଯ୍ୟ ପ୍ରାର୍ଥନା କରି ଆରମ୍ଭକଲେ, ସନ୍ଧ୍ୟା ପର୍ଯ୍ୟନ୍ତ ତାହା ସୁରୁଖୁରୁରେ ସମାପିତ ହୁଏ ।

୬ । ପ୍ରାର୍ଥନାରେ ନିଜର ଅଯୋଗ୍ୟତା ଓ ଦୁର୍ବଳତାକୁ ସ୍ୱୀକାର କରାଯାଇ ପାରେ ।

୭ । ପ୍ରାର୍ଥନା ଓ ସଦିଚ୍ଛାପୂର୍ଣ୍ଣ ଚେଷ୍ଟା କେବେ ବ୍ୟର୍ଥ ହୁଏ ନାହିଁ ।

୮ । ପ୍ରାର୍ଥନା ହେଉଛି ଆତ୍ମାର ଖାଦ୍ୟ ।

୯ । ଭଗବାନଙ୍କୁ ଚିଠି ଲେଖିବା ପାଇଁ କାଗଜ, କଲମ, ଦୁଆତ ଇତ୍ୟାଦି ଦରକାର ନାହିଁ । ଏହି ଚିଠିର ନାମ ହେଉଛି ପ୍ରାର୍ଥନା ଓ ପୂଜା ।

୧୦ । ସଦାଚାରର ହିଁ ପ୍ରାର୍ଥନାର ଅବଦାନ ।

୧୧ । ପ୍ରାର୍ଥନା ମନ୍ତ୍ର କିମ୍ବା ଗୀତରେ ନଥାଏ, ଏହା ଥାଏ ହୃଦୟରେ ।

୧୨ । ପ୍ରାର୍ଥନାରେ ଜାତି ବିଭେଦ ନାହିଁ । ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତେ ପ୍ରାର୍ଥନା କରିପାରନ୍ତି ।

୧୩ । ପ୍ରାର୍ଥନା ଅର୍ଥ ଭିକ୍ଷା କରିବା ନୁହେଁ, ଏହା ହେଉଛି ଆତ୍ମାର ଆହ୍ୱାନ ।

୧୪ । ସ୍ତୁତି, ଉପାସନା, ପ୍ରାର୍ଥନା ଇତ୍ୟାଦି ଅନ୍ଧବିଶ୍ୱାସ ନୁହେଁ ।

୧୫ । ଅର୍ଥହୀନ ସ୍ତୋତ୍ରପାଠ ପ୍ରାର୍ଥନା ନୁହେଁ ।

୧୬ । ପ୍ରାର୍ଥନା ସ୍ୱତଃ ପ୍ରବୃତ୍ତ ହୋଇ ହୃଦୟରୁ ନିସୃତ ହୋଇଥାଏ ।

୧୭ । ପ୍ରାର୍ଥନା ଆତ୍ମାର ବ୍ୟାକୁଳତାର ଦ୍ୟୋତକ ।

୧୮ । ପ୍ରାର୍ଥନା ପଶ୍ଚାତ୍ତାପର ହେଉଛି ଏକ ସଙ୍କେତ ।

୧୯ । ମୁଁ ମୋର କୌଣସି କାମ ବିନା ପ୍ରାର୍ଥନାରେ କରିନଥାଏ ।

୨୦ । ଭକ୍ତିପୂର୍ଣ୍ଣ ହୃଦୟ ହେଉଛି ପ୍ରାର୍ଥନାର ବାହନ ।

୨୧ । ଈଶ୍ୱରଙ୍କର ସହସ୍ରନାମ ଅଛି । ଯେଉଁ ନାମ ଆମକୁ ଭଲ ଲାଗିବ, ସେହି ନାମରେ ଆମେ ପୂଜା ଓ ପ୍ରାର୍ଥନା କରି ପାରିବା ।

୨୨ । ପ୍ରାର୍ଥନା ଆତ୍ମଶୁଦ୍ଧି ଓ ଆତ୍ମ-ପରୀକ୍ଷଣର ପ୍ରକୃଷ୍ଟ ଆହ୍ୱାନ ।

୨୩ । ପ୍ରାର୍ଥନା ଧର୍ମ ଓ ମାନବ-ଜୀବନର ହେଉଛି ମର୍ମିକ ଅଙ୍ଗ ।

୨୪ । ପ୍ରାର୍ଥନା ପାଇଁ ସେପରି କିଛି ଜଟିଳ କଠୋର ନିୟମ ଗଢା ଯିବା ଉଚିତ ନୁହେଁ; କିମ୍ବା ସମୟ ନିର୍ଦ୍ଦିଷ୍ଟ କରାଯିବା ଉଚିତ ନୁହେଁ । ଏହା ନିଜନିଜର ସ୍ୱଭାବ ଉପରେ ନିର୍ଭର କରିଥାଏ ।

୨୫ । ପ୍ରାର୍ଥନା ସକାଳର କଞ୍ଚି ଓ ସଂଧ୍ୟାର କୋଲପ ପରି ।

୨୬ । ପ୍ରାର୍ଥନା ଆତ୍ମଶୁଦ୍ଧିର ସହଜ ଓ ସରଳ ଉପାୟ ।

୨୭ । ମୋତେ ଯାହା କିଛି ଶାନ୍ତି ଓ ସଫଳତା ମିଳିଥାଏ, ତାହା ପ୍ରାର୍ଥନା ଦ୍ୱାରାହିଁ ମିଳିଥାଏ ।

୨୮ । ପ୍ରାର୍ଥନା ହେଉଛି ଈଶ୍ୱରଙ୍କ ସହିତ ସହଯୋଗ ।

୨୯ । ପ୍ରାର୍ଥନା ଦ୍ୱାରା ଈଶ୍ୱରଙ୍କ କୃପା ଓ ସହାୟତା ମିଳିଥାଏ । ତାହାର ବଳରେ ମୋର କମ୍ ଜୋରଥିଲେ ମଧ୍ୟ ମୁଁ ବିଜୟୀ ହୋଇଥାଏ ।

୩୦ । ଭ୍ରମ ବିଗ୍ରହର ଶୁଦ୍ଧିପାଇଁ ବିନୀତ ପ୍ରାର୍ଥନା ଦରକାର ।

—*—

# ପ୍ରେମ

୧ । ପ୍ରେମପରି ପବିତ୍ର ଜିନିଷ ସଂସାରରେ ନାହିଁ ।

୨ । ଯେଉଁଠି ପ୍ରେମ ଅଛି, ସେଠି ଭୟର ସ୍ଥାନ ନାହିଁ ।

୩ । ଶୁଦ୍ଧ ପ୍ରେମ ବଳରେ ସଂସାରରେ ସବୁ ଜିନିଷ ସମ୍ଭବପର ହୋଇ ପାରେ ।

୪ । ପ୍ରେମ ସୂତ୍ରରେ ଜଗତ ବନ୍ଧା ।

୫ । ଆମର ପ୍ରେମ ହେଉଛି ହୃଦୟର ସାମଗ୍ରୀ ଓ ଶାନ୍ତ କାର୍ଯ୍ୟର ନିୟାମକ ।

୬ । ମୋ କଳ୍ପନାରେ ପ୍ରେମ ହେଉଛି କୁସୁମଠାରୁ କୋମଳ ଓ ବଜ୍ରଠାରୁ କଠିନ ।

୭ । ପ୍ରେମ ସତ୍ୟାଶ୍ରୟୀ ଓ ଆଶାମୟ । ଏହା କେବେ ନିଷ୍ଫଳ ହୁଏନାହିଁ ।

୮ । ପ୍ରେମତତ୍ତ୍ୱ ସଂସାରକୁ ଶାସନ କରିଥାଏ ।

୯ । ଯେଉଁଠି ପ୍ରେମ ସେଇଠି ହିଁ ପରମାତ୍ମା ।

୧୦ । ପିତା-ପୁତ୍ର, ଭାଇ-ଭଉଣୀ ଓ ବନ୍ଧୁ ବାନ୍ଧବଙ୍କ ମଧ୍ୟରେ ଆମ୍ଭେମାନେ ପ୍ରେମର ସନ୍ଧାନ ପାଇଥାଉଁ; କିନ୍ତୁ ଏହାର ଉପଯୋଗ ସମସ୍ତ ଜୀବନ୍ତ ପ୍ରାଣୀଙ୍କ ମଧ୍ୟରେ ହେବା ଉଚିତ ।

୧୧ । ପ୍ରେମର କ୍ଷେତ୍ର ବିଶ୍ୱ ବିସ୍ତୃତ ହେବା ଉଚିତ ।

---

# ବନ୍ଧୁତା

୧ । ମତଭେଦ ଦ୍ୱାରା ବନ୍ଧୁତାର ପରୀକ୍ଷା ତଥା ନିରୀକ୍ଷା କରାଯାଇ ଥାଏ ।

୨ । ବନ୍ଧୁର ଦୋଷ ଘୋଡ଼ାଇ ଗୁଣ ଦେଖାଇବା ହେଉଛି ପ୍ରକୃତ ବନ୍ଧୁତା ।

୩ । ଆତ୍ମସମର୍ପଣ ହିଁ ବନ୍ଧୁତାର ପରିଚ୍ୟକ ।

୪ । ଲାଞ୍ଛିତ ଜରିଆରେ ସ୍ଥାୟୀ ବନ୍ଧୁତା ଅସମ୍ଭବ ।

୫ । 'ବସୁଧୈବ କୁଟୁମ୍ବକମ୍' ହିଁ ମୋର ଲକ୍ଷ୍ୟ ।

୬ । ମୁଁ ବନ୍ଧୁ ସମ୍ବନ୍ଧ ଧର୍ମ କମ୍ବା ଦାର୍ଶନିକ ଯୁକ୍ତି କରିବାକୁ ଗୁହେଁନା ।

---

## ବ୍ରାହ୍ମଣ

୧ । ଯେ ବ୍ରହ୍ମକୁ ଜାଣିଛନ୍ତି, ସେ କେବଳ ବ୍ରାହ୍ମଣ । ଅନ୍ୟମାନେ ନିଜକୁ ବ୍ରାହ୍ମଣ ବୋଲି ପରିଚୟ ଦେବା ବଡ଼ ଭୁଲ ।

୨ । ବ୍ରାହ୍ମଣମାନେ ହିଁ ଧର୍ମରୂପକ ପ୍ରାଚୀରର ସ୍ରଷ୍ଟା, ଅସ୍ପୃଶ୍ୟତାର ପରିପୋଷକ ।

୩ । ଯେ ଯେପରି କର୍ତ୍ତବ୍ୟ କରେ, ସେପରି ନାମରେ ସେ ଡକା-ଯାଏ । ତୁମେ ମଧ୍ୟ ବ୍ରାହ୍ମଣର କର୍ତ୍ତବ୍ୟ କଲେ ବ୍ରାହ୍ମଣ ନାମରେ ଅଭିହିତ ହୋଇ ପାରିବ ।

---

## ବୁଦ୍ଧି

୧ । ଯାହାର ବୁଦ୍ଧି ନାହିଁ, ତାହାର ବଳ ନାହିଁ ।

୨ । ସମାଜର ମଙ୍ଗଳ ପାଇଁ ବୁଦ୍ଧିର ଉପଯୋଗ କରାଯିବା ଉଚିତ ।

୩ । ରଚନାତ୍ମକ କାମ କେବଳ ବୁଦ୍ଧିବଳରେ ପୂର୍ଣ୍ଣ ହୋଇ ନଥାଏ । ଏଥିପାଇଁ ଆତ୍ମିକ ଶକ୍ତିର ଆଧ୍ୟାତ୍ମିକ ପ୍ରୟୋଗ ଦରକାର ।

୪ । ବୁଦ୍ଧି ହେଉଛି କର୍ମାନୁସାରିଣୀ ।

୫ । ଯାହାମାନଙ୍କରେ ଶୁଦ୍ଧ ଶ୍ରଦ୍ଧା ଅଛି, ତା'ର ବୁଦ୍ଧି ତେଜସ୍ୱୀ ।

୬ । ବୁଦ୍ଧି ଓ ତର୍କର ସଂଯୋଗରେ ସୁଫଳ ମିଳିଥାଏ; କିନ୍ତୁ ଶ୍ରଦ୍ଧାର ସମନ୍ୱୟରେ ଅଧିକ ସୁଫଳ ମିଳେ ।

୭ । ବୁଦ୍ଧିର ବିକାଶ ନହେଲେ ମାନବତା ପ୍ରାପ୍ତି ଅସମ୍ଭବ ।

୮ । ବୁଦ୍ଧି ହେଉଛି ହୃଦୟର ଦାସୀ ।

୯ । ବୁଦ୍ଧି ପ୍ରଖର ହେଲେ ମଧ୍ୟ ବିବେକକୁ ଅପେକ୍ଷା କରିଥାଏ ।

୧୦ । ବୁଦ୍ଧିର ଦୁରୁପଯୋଗ ସଂସାରରେ ସବୁଠାରୁ ବଡ଼ ଅନର୍ଥର କାରଣ ।

୧୧ । ସଂସାରରେ ବୁଦ୍ଧିବଳ ସବୁଠାରୁ ବଡ଼ ବଳ ।

---

## ବ୍ରହ୍ମଚର୍ଯ୍ୟ

୧ । ବ୍ରହ୍ମଚର୍ଯ୍ୟର ଠିକ୍ ଅର୍ଥ ହେଉଛି ବ୍ରହ୍ମର ଅନ୍ୱେଷଣ । ଏହି ଏହି ଅନେଷଣ ଇନ୍ଦ୍ରିୟର ପୂର୍ଣ୍ଣ ସଂଯମ ବିନା ଅସମ୍ଭବ । ସବୁ ଇନ୍ଦ୍ରିୟକୁ ସବୁ ସ୍ଥାନରେ ଅନବରତ ମନ, ବଚନ ଓ କର୍ମରେ ସଂଯମ କରିବା ଉଚିତ ।

୨ । ବ୍ରହ୍ମଚର୍ଯ୍ୟର ଅର୍ଥ କେବଳ ଜନନେନ୍ଦ୍ରିୟର ସଂଯମ ନୁହେଁ ।

୩ । ଅହିଂସାର ପୂର୍ଣ୍ଣପାଳନ ବ୍ରହ୍ମଚର୍ଯ୍ୟ ବିନା ଅସମ୍ଭବ ।

୪ । ଯେ ଅହିଂସା ବ୍ରତ ପାଳନ କରେ, ସେ କାହାକୁ ଭୟ କରିନଥାଏ ।

୫ । ବୀର୍ଯ୍ୟହାନୀ ଦ୍ୱାରା ଶାରୀରିକ ତଥା ମାନସିକ ହାନୀ ଘଟିଥାଏ ।

୬ । ମନ, ବଚନ ଓ କର୍ମରେ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିବା ଉଚିତ ।

୭ । ବ୍ରହ୍ମଚର୍ଯ୍ୟର ସମ୍ୟକ୍‌ଅର୍ଥ ହୃଦୟଙ୍ଗମ କରି, ଜୀବନରେ ଏହାର ସମ୍ଭବତା ପରୀକ୍ଷା କରିବା ଉଚିତ ।

୮ । ବ୍ରହ୍ମଚାରୀଙ୍କୁ ବଞ୍ଚିବା ପାଇଁ ଖାଦ୍ୟ ଖାଇବା ଉଚିତ ।

୯ । ଉତ୍ତମ ବନ୍ଧୁ ଓ ପୁସ୍ତକ ବ୍ରହ୍ମଚର୍ଯ୍ୟ ପାଳନର ପରମ ସହାୟକ ।

୧୦ । ବ୍ରହ୍ମଚାରୀ ଆଖି ଓ କାନକୁ ଦେବଦର୍ଶନ ଓ ହରିକଥା ଶ୍ରବଣ ପାଇଁ ନିଯୁକ୍ତ କରିଥାଏ ।

୧୧ । ବ୍ରହ୍ମଚର୍ଯ୍ୟର ଅର୍ଥ ହେଉଛି ମନ, ବଚନ ଓ କର୍ମରେ ଇନ୍ଦ୍ରିୟ ମାନଙ୍କର ସଂଯମ ।

୧୨ । ବ୍ରହ୍ମଚର୍ଯ୍ୟର ନିୟମ ପାଳନ ଈଶ୍ୱରଙ୍କ ପ୍ରତି ସଜୀବଶ୍ରଦ୍ଧା ବିନା ଅସମ୍ଭବ ।

୧୩ । ବ୍ରହ୍ମଚର୍ଯ୍ୟ ଜୀବନର ହେଉଛି ପ୍ରଥମ ସୋପାନ । ପ୍ରତିଦିନ ଅଭ୍ୟାସ କରି ଏଥିରେ ନ ଚଢ଼ିଲେ ମଣିଷ ଉପରକୁ ଉଠି ପାରେ ନାହିଁ ।

୧୪ । ବୀର୍ଯ୍ୟରକ୍ଷା ବ୍ରହ୍ମଚର୍ଯ୍ୟ ନୁହେଁ । ବରଂ ଏହା ହେଉଛି ବ୍ରହ୍ମଚର୍ଯ୍ୟର ପ୍ରଥମ ଚରଣ ।

———

## ଭାରତ

୧ । ମୁଁ ଭାରତର ଅଭିବୃଦ୍ଧି ଚାହେଁ, ଯାହାଦ୍ୱାରାକି ବିଶ୍ୱ ଉପକୃତ ହେବ ।

୨ । ଅନ୍ୟ ଦେଶର ଧ୍ୱଂସ ସାଧନ କରି ଭାରତବର୍ଷ ବୋଳ-ଉଠିବାକୁ ମୁଁ ପସନ୍ଦ କରେ ନାହିଁ ।

୩ । ଭାରତର ସମ୍ମାନ ରଖିବା ଦ୍ୱାରା ଆମ୍ଭେମାନେ ବିଶ୍ୱ ସମ୍ମାନ ରଖି ପାରିବା ।

୪ । ସମସ୍ୟା କଣ୍ଟକିତ ବିଶ୍ୱକୁ ଭାରତ ହିଁ ଶାନ୍ତି ଓ ସଦିଚ୍ଛାରବାଣୀ ଶୁଣାଇ ଥାଏ ।

୫ । ଭାରତ କେବେ କୌଣସି ଜାତି ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିନାହିଁ ।

୬ । ଭାରତକୁ ଦୁଇଭାଗ କରିବା ଅର୍ଥ ଗୋଟିଏ ଜୀବନ୍ତ ଶରୀରକୁ ଦୁଇଭାଗ କରିବା ।

୭ । ଭାରତର ସ୍ୱାଧୀନତା ନିଶ୍ଚୟ ଦିନେ ବିଶ୍ୱରେ ବିପ୍ଳବ ଆଣିବ ।

୮ । ମୁକ୍ତ ଭାରତର ପ୍ରାପ୍ୟ କେହି ଶତ୍ରୁ ରହିବେ ନାହିଁ ।

୯ । ଭାରତ ସ୍ୱତଃପ୍ରବୃତ୍ତ ହୋଇ ଯୁଦ୍ଧରେ ପ୍ରବେଶ କରିବା ଅର୍ଥ ଆତ୍ମହତ୍ୟା କରିବା ।

୧୦ । ମୁଁ ଭାରତର ସ୍ୱାଧୀନତା ପାଇଁ ବଞ୍ଚି ରହିଛି ଓ ଏହା ପାଇଁ ମଧ୍ୟ ମୃତ୍ୟୁ ବରଣ କରିବି ।

୧୧ । ଭାରତ ନିଶ୍ଚୟ ଆତ୍ମନିର୍ଭରଶୀଳ ହୋଇବଞ୍ଚି ରହିବ ।

୧୨ । ଭାରତର ଜାତୀୟତା ଧ୍ୱଂସ କିମ୍ବା ଅତ୍ୟାଚାର ଉପରେ ପର୍ଯ୍ୟବଶିତ ନୁହେଁ ।

---

## ଭୁଲ୍

୧ । ଭୁଲ୍ ମାନି ନେବା ଦ୍ୱାରା ଆମର ଅଶେଷ ଉପକାର ହୋଇଥାଏ । ଏହା ଏକ ପ୍ରକାର ଶୁଦ୍ଧ ବ୍ୟବହାର ।

୨ । ବୃଦ୍ଧି ସବୁତ ସଂଗ୍ରାମ କରିବାହିଁ ଜୀବନ ।

୩ । ଭୁଲ୍‌କୁ ତର୍କସହକାରେ ସାବ୍ୟସ୍ତ କରିଯାଇ ପାରେନା ।

୪ । ଭୁଲ୍ କରି ମଣିଷ ଶିକ୍ଷାକରେ ସତ; କିନ୍ତୁ ଜୀବନ ତମାମ ନୁହେଁ ।

—*—

## ମାତା ପିତା

୧ । ମାତା ପିତାଙ୍କୁ ଭକ୍ତି କରିବାକୁ ମୁଁ ଧର୍ମ ବୋଲି ମାନିଥାଏ ।

୨ । ମାତା ପିତାଙ୍କ ସେବା ପୁତ୍ରର ହେଉଛି ପ୍ରଥମ କର୍ତ୍ତବ୍ୟ ।

୩ । ମା'ପରି ପୂଜନୀୟ ବସ୍ତୁ ସଂସାରରେ ଦୁଷ୍ପ୍ରାପ୍ୟ ।

୪ । ମାତା ପିତାଙ୍କ ଋଣ ପୁଅଝିଅ ଜୀବନମଧ୍ୟରେ ଶୁଝି ପାରନ୍ତି ନାହିଁ ।

୫ । ମା' ବାପାଙ୍କୁ ପିଲାପିଲି ବେଳେବେଳେ କିପରି ଶ୍ରଦ୍ଧା ଓ ଭକ୍ତି ନ କରନ୍ତି, ତାହା ମୁଁ କଳ୍ପନା କରି ପାରୁନାହିଁ ।

୬ । ସନ୍ତାନପାଇଁ ମାତା ପିତା ହେଉଛନ୍ତି ପ୍ରଥମ ଗୁରୁ ଓ ସର୍ବାଗ୍ରେ ପୂଜ୍ୟ ।

---

## ମୌନ

୧ । ଯେତେବେଳେ ସମସ୍ତ ସମ୍ଭବପର, ସେତେବେଳେ ମୌନ ରହିବା ଉଚିତ । ଦରକାର ନ ପଡ଼ିଲେ କଥା କହିବା ଉଚିତ ନୁହେଁ ।

୨ । ମୌନ ରହିବା ଦ୍ୱାରା ଅନ୍ତର୍ଶକ୍ତି ଉଜ୍ଜୀବିତ ହୋଇଥାଏ ।

୩ । କଥା କହିବା ଏକ ସୁନ୍ଦର କଳା; କିନ୍ତୁ ମୌନ ରହିବା ତା'ଠାରୁ ଅଧିକ ସୁନ୍ଦର ।

୪ । ମୌନରହିବା ଦ୍ୱାରା କଳହର ଆଶଙ୍କା ନ ଥାଏ ।

୫ । ଅନେକ ସମୟରେ ଅନର୍ଥ ବନ୍ଦ କରିବା ପାଇଁ ମୌନ ରହିବା ହେଉଛି ଏକ ଅମୋଘ ଉପାୟ ।

୬ । ମୌନ ରହିବା ଦ୍ୱାରା ଇନ୍ଦ୍ରିୟମାନଙ୍କୁ ବହୁ ପରିମାଣରେ ନିୟନ୍ତ୍ରଣ କରି ଯାଇଥାଏ ।

---

## ମହାଭାରତ

୧ । ମହାଭାରତ ସଂସାରର ହେଉଛି ସବୁଠାରୁ ବଡ଼ ଜ୍ଞାନଭଣ୍ଡାର ।

୨ । ମହାଭାରତରେ ଯେଉଁ ଯୁଦ୍ଧର ବର୍ଣ୍ଣନା କରାଯାଇଅଛି, ସେହି ଯୁଦ୍ଧ ଆମ ଅନ୍ତରରେ ଚିରନ୍ତନ ଲାଗି ରହିଅଛି ।

୩ । ମହାଭାରତ ହେଉଛି ଏକ ରତ୍ନର ଖଣି । ଗୀତା ଏହି ଖଣିରେ ଥିବା ରତ୍ନମାନଙ୍କ ମଧ୍ୟରେ ସବୁଠାରୁ ଉଜ୍ଜ୍ୱଳ ।

୪ । ମହାଭାରତ ମାନବସମାଜର ହେଉଛି ଏକ ଆଧ୍ୟାତ୍ମିକ ଇତିହାସ ।

୫ । ଆମ ହୃଦୟରେ ସତ୍ ଓ ଅସତ୍‌ର ଯେଉଁ ସନାତନ ସଂଘର୍ଷ ଚାଲିଛି, ମହାଭାରତର କବି ଏକ ଉଦାହରଣ ଜରିଆରେ ତାହା ଉପସ୍ଥାପନ କରି ଅଛନ୍ତି ।

୬ । ଗୁଣ, ଜ୍ଞାନ ଓ ସ୍ମୃତିରେ ମହାଭାରତ ରୂପକ ଭଣ୍ଡାର ଭରପୂର ।

---

# ମୃତ୍ୟୁ

୧ । ମୃତ୍ୟୁ ହେଉଛି କେବଳ ନିଦ୍ରା ଓ ବିସ୍ମୃତି ।

୨ । ମଣିଷର ବିକାଶ ପାଇଁ ଜୀବନରେ ମୃତ୍ୟୁ ଆବଶ୍ୟକ ।

୩ । ମହାପୁରୁଷ କେବେ ହେଲେ ମରନ୍ତି ନାହିଁ ।

୪ । ମୋର ବିଶ୍ୱାସ ଯେ ମଣିଷ କାର୍ଯ୍ୟର ଶୁଭାରମ୍ଭ, ତା'ର ମୃତ୍ୟୁପରେ ହୋଇଥାଏ ।

୫ । ମୃତ୍ୟୁ ହେଉଛି ଜୀବନର ଜନନୀ ।

୬ । ମୃତ୍ୟୁ ନବଜୀବନ ପାଇଁ ଏକ ଉପହାର ।

୭ । ବାସ୍ତବରେ ମୃତ୍ୟୁ ହେଉଛି ଏକ ବିଶ୍ରାମିକା । ଏଥିପାଇଁ ଭୟଭୀତ ହେବା ମୂର୍ଖତା ମାତ୍ର ।

୮ । ମୃତ୍ୟୁ ଆମର ଜୀବନର ସାଥୀ । ସେ ଆମକୁ ନବଜୀବନ ଉପହାର ଦେଇଥାଏ ।

୯ । ଦୁନିଆରେ ମୃତ୍ୟୁପରି କୌଣସି ନିଶ୍ଚିତ ବସ୍ତୁ ନାହିଁ ।

୧୦ । ମୃତ୍ୟୁ ନୂତନ ଓ ପୁରାତନର ସନ୍ଧି ସ୍ଥଳ ।

୧୧ । ମୃତ୍ୟୁ ଆମ୍ଭମାନଙ୍କୁ ଯନ୍ତ୍ରଣାରୁ ରକ୍ଷାକରେ, ମନରେ ଅଭିନବ ଆଶା ସଞ୍ଚାର କରେ, ନିଦ୍ରାପରି ପୁଣି ଶକ୍ତି ପ୍ରଦାନ କରେ ।

୧୨ । ମୁଁ ଆନନ୍ଦରେ ଯେ କୌଣସି ଲୋକ ହାତରେ ମରିବାକୁ ତିଆର ।

---

# ମଦ୍ୟପାନ

୧ । ବ୍ୟଭିଚାର ଓ ବେଶ୍ୟାବୃତ୍ତିଠାରୁ ମଦ୍ୟପାନ ଅଧିକ ନିନ୍ଦନୀୟ ।

୨ । ମଦ୍ୟପାନ ମନୁଷ୍ୟକୁ ପଶୁପ୍ରବୃତ୍ତିର ଅଧୀନ କରିଥାଏ ।

୩ । ମାରାତ୍ମକ ରୋଗ ଆମର ଯେତିକ କ୍ଷତିକରେ, ମଦ୍ୟପାନ ତା'ଠାରୁ ବେଶି କ୍ଷତି କରିଥାଏ ।

୪ । ରୋଗଦ୍ୱାରା ଆମ ଶରୀରର କ୍ଷତି ଘଟେ; କିନ୍ତୁ ମଦ୍ୟପାନ ଦ୍ୱାରା ଉଭୟ ଶରୀର ଓ ଆତ୍ମାର କ୍ଷତି ଘଟିଥାଏ ।

୫ । ମଦ୍ୟପାନ ଯୋଗୁଁ ଜାତିର ସାଂସ୍କୃତିକ ତଥା ରାଜନୈତିକ ପତନ ହୋଇଥାଏ ।

୬ । ରୋମ ସାମ୍ରାଜ୍ୟର ପତନ ପାଇଁ ମଦ୍ୟପାନହିଁ ମୁଖ୍ୟତଃ ଦାୟୀ ।

୭ । ମଦ୍ୟପାନଦ୍ୱାରା ବ୍ୟକ୍ତି ପାପ କରିବା ସଙ୍ଗେ ସଙ୍ଗେ ବ୍ୟାଧି ଅର୍ଜନ କରିଥାଏ ।

୮ । ମଣିଷର ବିନାଶ ମଦ୍ୟପାନ ଦ୍ୱାରା ସହଜରେ ହୋଇପାରେ ।

୯ । ମଦ୍ୟପାନ ଦ୍ୱାରା ଶରୀର ଓ ଆତ୍ମା ଉଭୟ ନଷ୍ଟହୁଏ ।

୧୦ । ଦେଶରେ ମଦ୍ୟପାନ ବିରୁଦ୍ଧରେ ପୌଢ଼ଶିକ୍ଷା ବ୍ୟବସ୍ଥା ରହିବା ଉଚିତ ।

୧୧ । ମଦ୍ୟପାନ ଅଭ୍ୟାସକୁ ଗୋଟିଏ ବେମାର ବୋଲି ଧରିବାକୁ ହେବ ।

୧୨ । ଯଦି ମୁଁ ଏକଘଣ୍ଟା ପାଇଁ ଭାରତର ଶାସନ ଦାୟିତ୍ୱ ନିଏ, ତାହାହେଲେ ମଦ ଦୋକାନଗୁଡ଼ିକ ସଙ୍ଗେ ସଙ୍ଗେ ବନ୍ଦକରି ଦେବି ।

୧୩ । ଏହା ସମସ୍ତଙ୍କ ସ୍ମରଣ ରଖିବା ଉଚିତ ଯେ ନିଶାରାକ୍ଷସୀ ଦ୍ୱାରା କବଳିତ ବ୍ୟକ୍ତି ସର୍ବଦା ମତିଭ୍ରଷ୍ଟ ।

———

# ଯୁବକ

୧ । କୌଣସି ଜାତିର ମହତ୍‌କାର୍ଯ୍ୟ ସେହି ଜାତିର ଯୁବକମାନଙ୍କ ଉପରେ ନିର୍ଭର କରେ ।

୨ । ଯେପରି ଗୋଟିଏ ବୃକ୍ଷ ବସନ୍ତଋତୁରେ ବିକଶିତ ହେଲେ ଭବିଷ୍ୟତରେ ତା'ଠାରୁ ଫଳଲାଭ ପାଇଁ ଆଶା ପୋଷଣ କରୁ, ସେହିପରି ଯୁବକ ସମାଜ ଜୀବନବସନ୍ତର ନବୀନ ଉନ୍‌ମେଷରେ ଚରିତ୍ରବାନ ହେଲେ, ଭବିଷ୍ୟତ ପାଇଁ ଦେଶ ତାଙ୍କ ଉପରେ ମହତ୍ ଆଶା ପୋଷଣ କରିବ ।

୩ । ଜଣେ ଉତ୍ସାହୀ ଯୁବକ ଦିନକ ମଧ୍ୟରେ ଯାହା କରିପାରେ, ଦଳେ କର୍ମକୁଣ୍ଠ ବ୍ୟକ୍ତି ବର୍ଷକ ମଧ୍ୟରେ ତାହା କରି ପାରିବେ ନାହିଁ । ତେଣୁ ଦେଶ ଦଳେ ନିକମାଲୋକ ଅପେକ୍ଷା ଜଣେ ଉତ୍ସାହୀ ଯୁବକ ଚାହେଁ ।

୪ । ଯେଉଁ ଯୁବକ ଯଥେଷ୍ଟ ଯୌତୁକ ପାଇଲେ ବିବାହ କରିବାକୁ ମଙ୍ଗନ୍ତି, ସେ ତାଙ୍କ ବିଶ୍ୱବିଦ୍ୟାଳୟ ଉପାଧିକୁ କଳଙ୍କିତ କରନ୍ତି ।

୫ । ଯୁବତୀର ସୌନ୍ଦର୍ଯ୍ୟ ସେବାରେ ଫୁଟେ; କିନ୍ତୁ ଯୁବକର ସୌନ୍ଦର୍ଯ୍ୟ ପ୍ରତିଜ୍ଞାରେ ଫୁଟେ ।

୬ । ପ୍ରତ୍ୟେକ ଯୁବକ ଭାବିବା ଉଚିତ ଯେ, ମୁଁ ମୋର ଜୀବନ ବସନ୍ତର ପ୍ରଥମ ପ୍ରଭାତକୁ ଆଳସ୍ୟରେ ନ ବିତାଇ ସେହି ସମୟ ଭିତରେ ଭବିଷ୍ୟତ ଜୀବନର ପୁଷ୍ଟିପାଇଁ ଉଦ୍ୟମ କରିଯିବି ।

୭ । ଦେଶରେ ଅମାନୁଷିକ ପ୍ରଥା ତଥା ଅତ୍ୟାଚାରର ବିଲୋପ ପାଇଁ ଆଗୁସାର ହେଉଥିବା ଯୁବକମାନଙ୍କ ବ୍ୟତୀତ ସଂସ୍କାର ଅସମ୍ଭବ ।

---

# ଯୁଦ୍ଧ

୧ । ଯୁଦ୍ଧ ବିନାଶର ହେତୁ ।

୨ । ଯୁଦ୍ଧକୁ ବିରୋଧକରି ମରିବାକୁ ଆଗଭର ହେବା ଉଚିତ ।

୩ । ଯୁଦ୍ଧଦ୍ୱାରା କେବଳ ଧରିତର କାହିଁକି, ସଂସାରରେ ମୁକ୍ତି ମିଳିବା ଅସମ୍ଭବ ।

୪ । ଯୁଦ୍ଧ ମାନବ-ଜାତିର ବିନାଶକ, ଏଥିରୁ ମୁକ୍ତି ପାଇବାପାଇଁ ଉପାୟ ଚିନ୍ତା କରିବା ଉଚିତ ।

୫ । ଯୁଦ୍ଧରେ ବଡ଼ ବଡ଼ ରାଜ୍ୟର ସର୍ବନାଶ ହୋଇଛି ।

୬ । ଘରେ ହେଉ ବା ବାହାରେ ହେଉ, ଯୁଦ୍ଧ ହେଉଛି କ୍ଷତି-କାରକ ।

୭ । ଯୁଦ୍ଧ ମଣିଷର ହେଉଛି ପ୍ରଧାନ ଶତ୍ରୁ ।

୮ । ଯୁଦ୍ଧ ସଂସାରରେ ସବୁଠାରୁ ଅବାଞ୍ଛନୀୟ ଓ ଘୃଣ୍ୟବସ୍ତୁ ।

୯ । ଯୁଦ୍ଧରୁ ସବୁ ପ୍ରକାର ଉପଦ୍ରବ ଜାତ ହୋଇଥାଏ ।

---

# ଯୌତୁକ

୧ । ଶିକ୍ଷିତ ଯୁବକ ବିବାହପାଇଁ ଯୌତୁକ ଦାବୀ କରିବା ଅର୍ଥ, କେବଳ ଶିକ୍ଷାକୁ ଅବମାନନା କରିବା ନୁହେଁ, ସ୍ତ୍ରୀ ଜାତିର ଅବମାନନା କରିବା ।

୨ । ଯୌତୁକ ପ୍ରଥା ବିରୁଦ୍ଧରେ ଦୃଢ଼ ଜନମତ ସୃଷ୍ଟି କରାଯିବା ଉଚିତ ।

୩ । ଯେଉଁ ଯୁବକ ଯୌତୁକ ଦାବୀ କରୁଛି, ତାକୁ ସମାଜରୁ ବାସନ୍ଦ କରାଯିବା ଉଚିତ ।

୪ । ପ୍ରଚୁର ଧନପ୍ରାପ୍ତି ପାଇଁ ବିବାହ, ଅତି ନିନ୍ଦାର ବିଷୟ ।

୫ । ଯୌତୁକ ପ୍ରଥା ଦୂରୀକରଣ ପାଇଁ ଜାତିଆଣ ପ୍ରଥା ମଧ୍ୟ ଦୂର କରାଯିବା ଉଚିତ ।

୬ । ଏହି ପ୍ରଥାର ମୂଳୋତ୍ପାଟନ ପାଇଁ ଯୁବସମାଜରେ ଆନ୍ଦୋଳନ ଚଳିବା ଶ୍ରେୟସ୍କର ।

---

## ରାମନାମ

୧ । ପ୍ରତ୍ୟହରୁ ରାମନାମ ଉଚ୍ଚାରଣ କଲେ ମଣିଷ ନିର୍ବିକାର ହୋଇଥାଏ ।

୨ । ମନରେ କ୍ରୋଧ ଆସିଲେ ରାମନାମ ଉଚ୍ଚାରଣକରି ତାହା ସମ୍ବରଣ କରିବା ଉଚିତ ।

୩ । ମୋର ଚିକିତ୍ସକ ହେଉଛନ୍ତି ରାମ ଓ ଏକମାତ୍ର ଔଷଧ ହେଉଛି ରାମନାମ ।

୪ । ରାମନାମହିଁ ମୋର ଏକମାତ୍ର ଆଶ୍ରୟ ।

୫ । ରାମନାମର ତାତ୍ପର୍ଯ୍ୟ ବୁଝି ଜପକଲେ ମନରେ ଯଥେଷ୍ଟ ଶକ୍ତି ଆସିଥାଏ ।

୬ । ନିରହାରୀଙ୍କ ପକ୍ଷରେ ରାମନାମହିଁ ହେଉଛି ପ୍ରଧାନ ଆହାର ।

---

## ରାମାୟଣ

୧ । ତୁଳସୀ ଦାସଙ୍କ ରାମାୟଣକୁ ଭକ୍ତିମାର୍ଗର ମୁଁ ସର୍ବୋତ୍ତମ ଗ୍ରନ୍ଥ ବୋଲି ମାନିଥାଏ ।

୨ । ରାମଚରିତମାନସ ଚିନ୍ତା ଓ ଚରିତ୍ର ସ୍ୱରୂପ ରତ୍ନର ଏକ ବୃହତ୍ ଭଣ୍ଡାର ।

୩ । ରାମଚରିତମାନସରୁ ଲକ୍ଷ ଲକ୍ଷ ଲୋକ ଶାନ୍ତି ଆହରଣ କରନ୍ତି ।

୪ । ରାମାୟଣର କବି ଶବ୍ଦଚିତ୍ରକର ନୁହନ୍ତି, ମାନବ ହୃଦୟର ସେ ହେଉଛନ୍ତି ଜଣେ ନିପୁଣ ଚିତ୍ରକର ।

୫ । ରାମଙ୍କ ପରି ଆଦର୍ଶ ଚରିତ୍ର ସଂସାରର କୌଣସି ମହାକାବ୍ୟରେ ଦେଖିବାକୁ ମିଳେନାହିଁ ।

୬ । ମୋ'ର ରାମାୟଣ ପ୍ରତି ଅତୁଟ ଶ୍ରଦ୍ଧା ରହିଛି ।

---

## ବିଶ୍ୱାସ

୧ । ମନରେ ବିଶ୍ୱାସକୁ ସବୁବେଳେ ପ୍ରଜ୍ୱଳିତ ରଖିବା ଉଚିତ ।

୨ । ଯେଉଁ ଲୋକର ଭଗବାନଙ୍କ ପ୍ରତି ବିଶ୍ୱାସ ନାହିଁ, ସେ ଅହିଂସାବ୍ରତ ଆଚରଣ କରିପାରେ ନାହିଁ ।

୩ । ବିଶ୍ୱାସର ପାହାଡ଼ ବି ହଲପାରେ ।

୪ । ହିଂସାଦ୍ୱାରା ବିଶ୍ୱାସର ବିକାଶ ହୋଇପାରେ ନାହିଁ ।

୫ । ବିଶ୍ୱାସ ବିନା ସଂସାରର କୌଣସି ବ୍ୟବହାର ଓ ବ୍ୟାପାର ଚଳିପାରେ ନାହିଁ ।

୬ । ବିଶ୍ୱାସରେ ଦୃଢ଼ ହେଲେ ଫଳପ୍ରାପ୍ତି ସୁନିଶ୍ଚିତ ।



## ବ୍ରତ ଓ ସଂଯମ

୧ । କୌଣସି ପ୍ରତିଜ୍ଞା କିମ୍ବା ବ୍ରତ କରିବା ବଳବାନ୍ ଲୋକର କାମ, ନିର୍ବଳର ନୁହେଁ ।

୨ । ବ୍ରତରେ ଅପାର ଶକ୍ତି ରହିଛି; କାରଣ ଏହା ପଛରେ ରହିଛି ମନୋବୈଜ୍ଞାନିକ ଦୃଢ଼ତା ।

୩ । ସଂଯମବିନା ବ୍ରତ ଅସମ୍ଭବ । ତେଣୁ ପ୍ରଥମେ ସଂଯମ ପାଳନ କରି ଶିଖିବା ଉଚିତ ଓ ବ୍ରତ ଗ୍ରହଣ କରିବା ଉଚିତ ।

୪ । ଯେଉଁ ମଣିଷର ମନ ଦୁର୍ବଳ, ସେ ସଂଯମ ପାଳନ କରି ପାରେ ନାହିଁ ।

୫ । ଏକାଦଶ ବ୍ରତର ପାଳନ ଅତୀବ କଠିନ; କିନ୍ତୁ ନିୟମିତ ଅଭ୍ୟାସ ଦ୍ୱାରା ଏହା କରାଯାଇପାରେ ।

— ୪୦୪ —

## ବିବାହ

୧ । ବୈବାହିକ ପ୍ରେମ ହେଉଛି ଦୈବୀ ପ୍ରେମର ସୋପାନ ।

୨ । ଶାରୀରିକ ନୁହେଁ, ଆଧ୍ୟାତ୍ମିକ ମିଳନହିଁ ବିବାହର ଆଦର୍ଶ ।

୩ । ବିବାହକୁ ଜୀବନରେ ଉଚିତ ସ୍ଥାନ ଦେବା ଉଚିତ, ଏହାକୁ ଉପେକ୍ଷା କରିବା ଉଚିତ ନୁହେଁ ।

୪ । ଆଦର୍ଶ ବିବାହରେ ପ୍ରେମର ଆବଶ୍ୟକତା ଅପରିହାର୍ଯ୍ୟ । ପ୍ରଥମେ ଏହି ବିବାହ ପାଇଁ କେତେ ଗୁଡ଼ିଏ ସର୍ତ୍ତପୂରଣ କରିବାକୁ ପଡ଼ିବ ସେଗୁଡ଼ିକ ହେଉଛି—ଯୁବକ ଯୁବତୀ ଉଭୟଙ୍କ ପ୍ରତି ପରସ୍ପରର ଆକର୍ଷଣଥିବ, ଦୁଇଜଣଙ୍କର ଆର୍ଥିକ ସାମର୍ଥ୍ୟ ଥିବ, ଏଥିପାଇଁ ପିତାମାତାଙ୍କର ସ୍ୱୀକୃତି ଥିବ ଓ ଆଧ୍ୟାତ୍ମିକ ବିକାଶରେ ସମ୍ଭାବନାଥିବ ।

୫ । ସନ୍ତାନ ସନ୍ତତି ଆଶା ନରଖି ବିବାହ କରିବା ମହା ପାପ ।

୬ । କେବଳ କାମ ପିପାସା ମେଣ୍ଟାଇବା ପାଇଁ ବିବାହ କରିବା ବ୍ୟଭିଚାର ଛଡ଼ା ଅନ୍ୟ କିଛି ନୁହେଁ ।

—୪୦୨—

## ବେଦପାଠ

୧ । ବେଦପାଠବିନା ବିଶ୍ୱରହସ୍ୟ ସ୍ଫୁର୍ତ୍ତି ଆସେନାହିଁ ।

୨ । ବେଦପାଠ ଦ୍ୱାରା ମଣିଷ ଘରେ ବସି ମଧ୍ୟ ବିଦ୍ୟାପୀଠର ସନ୍ନିଧିରେ ଥାଏ ।

୩ । ସାଧୁ ଲୋକମାନଙ୍କର ବେଦପାଠଠୁଁ ବଳି ଅନ୍ୟ କୌଣସି ମହତ୍ତ୍ କାର୍ଯ୍ୟ ନାହିଁ ।

୪ । ବେଦପାଠ ବିଶ୍ୱରଶୀଳତାର ପ୍ରଧାନ ଅବଲମ୍ବନ ।

୫ । ଶିକ୍ଷିତମାନଙ୍କର ବେଦପାଠ ନିତ୍ୟକର୍ମର ଅଙ୍ଗୀଭୂତ ହେବା ଉଚିତ ।

୬ । ବେଦପାଠ ବିନା ମାନସିକ ବିକାଶ ହୋଇ ପାରେନା ।

୭ । ଦୁନିଆଁରେ ବହୁଲୋକ ବେଦାଧ୍ୟୟନ କରି ପ୍ରସିଦ୍ଧିଲାଭ କରି ଅଛନ୍ତି । ସ୍କୁଲ କଲେଜ ପଢ଼ା ନିମିତ୍ତ ମାତ୍ର ।

୮ । ବେଦପାଠ ଜ୍ଞାନ ସଂଚୟ ଓ ଆତ୍ମବିକାଶର ସର୍ବୋତ୍ତମ ସାଧନ ।

୯ । ବେଦପାଠ ଜ୍ଞାନ-ସଂପାଦନର କୁଂଚିକା ।

—✳—

## ବ୍ୟାୟାମ

୧ । ପବନ, ପାଣି ଓ ଖାଦ୍ୟପରି ଦେହପାଇଁ ବ୍ୟାୟାମ ଆବଶ୍ୟକ ।

୨ । ସମସ୍ତ ଶାରୀରିକ ତଥା ମାନସିକ କାର୍ଯ୍ୟ ବ୍ୟାୟାମ ଦ୍ୱାରା ସମ୍ମିଳିତ ହୋଇଥାଏ ।

୩ । ବ୍ୟାୟାମ ବିନା ଶରୀର ପରି ବୁଦ୍ଧି ମଧ୍ୟ ନିର୍ବଳ ହୋଇଯାଏ ।

୪ । ସୁସ୍ଥ ଶରୀର ଓ ପୁଷ୍ଟ ବୁଦ୍ଧି ନିର୍ବେଗତାର ପରିଚୟସୂଚକ ।
୫ । ଶାରୀରିକ ଓ ମାନସିକ ବ୍ୟାୟାମ ସୀମାମଧ୍ୟରେ କରିବା ଉଚିତ ।
୬ । ବଗିଚାକାମ କରିବା ଓ ବୁଲିବା ଖୁବ୍ ଭଲ ଧରଣର ବ୍ୟାୟାମ ।
୭ । ବ୍ୟାୟାମ ପାଇଁ ଇଚ୍ଛା ଏତେ ପ୍ରବଳ ହେବା ଉଚିତ ଯେ ଅବସ୍ଥା ବିଶେଷରେ ହତୋତ୍ସାହ ହେବା ଉଚିତ ନୁହେଁ ।
୮ । ବ୍ୟାୟାମ ହେଉଛି ସ୍ୱାସ୍ଥ୍ୟର କଞ୍ଚି ।
୯ । ନିଜର ବଳ ଅନୁଯାୟୀ ବ୍ୟାୟାମ କରିବା ଉଚିତ । ଦୁର୍ବଳ ଓ ବୃଦ୍ଧଙ୍କ ପାଇଁ ପଦଚାରଣ କରିବାହିଁ ହେଉଛି ଉପଯୁକ୍ତ ବ୍ୟାୟାମ ।
୧୦ । ଯେଉଁ ଯୁବକ ବ୍ୟାୟାମ ପ୍ରତି ଅଧିକ ଆକୃଷ୍ଟ, ସେ ସାଧାରଣତଃ ସଚ୍ଚରିତ୍ର ଓ ସ୍ୱାସ୍ଥ୍ୟବାନ ।



## ଶାସକ

୧ । ଲୋକେ ସାଧାରଣତଃ କହନ୍ତି ଯେ ଶାସକ ଯେପରି ଶାସିତ ଠିକ୍ ସେହିପରି ହେବା ଉଚିତ; କିନ୍ତୁ ଏହା ସମ୍ପୂର୍ଣ୍ଣ ସତ୍ୟ-ନୁହେଁ । ବରଂ ଶାସିତ ଯେପରି ଶାସକ ଠିକ୍ ସେହିପରି ହେବା ବିଧେୟ ।
୨ । ଯେଉଁଠାରେ ପ୍ରଜାମାନେ ସର୍ବଦା ସଜାଗ ରହନ୍ତି, ସେଠାରେ ଶାସକ ସୁରକ୍ଷକ ଓ ନ୍ୟାୟଶୀଳ ହୋଇଥାଏ; କିନ୍ତୁ ଯେଉଁଠି ପ୍ରଜାମାନେ ଆଳସ୍ୟ ପରିପୂର୍ଣ୍ଣ ଓ ଅବହେଳା ପ୍ରିୟ, ସେଠାରେ ଶାସକ ସ୍ୱତଃ ଅତ୍ୟାଚାରୀ ହୋଇଥାଏ ।

୩ । ମୋ ମତରେ ଯଦି ବର୍ତ୍ତମାନର ଶାସକମାନେ ପୁରାଣ ଯୁଗର ଯଶସ୍ୱୀ ରାଜାରାଜୁଡ଼ାଙ୍କ କଥା ପଢ଼ନ୍ତେ ଓ ତଦନୁଯାୟୀ ନିଜକୁ ସଂଶୋଧନ କରନ୍ତେ, ତାହାହେଲେ ସେମାନଙ୍କୁ ଗାଦି ଚ୍ୟୁତ କରିବା ପ୍ରଶ୍ନ ଆଦୌ ଉଠନ୍ତା ନାହିଁ ।

୪ । ଶାସକମାନେ କିଛି ଦିନ ପାଇଁ ଲୋକଶକ୍ତିକୁ ଦମନ କରି ପାରନ୍ତି; କିନ୍ତୁ ସବୁଦିନ ପାଇଁ ନୁହେଁ ।

୫ । ଶାସକମାନେ ପ୍ରଜାମାନଙ୍କର ପ୍ରଥମ ତଥା ପ୍ରଧାନ ସେବକ ।

୬ । ପ୍ରଜାମଣ୍ଡଳର ଉପଦେଶ ଅନୁଯାୟୀ ଶାସକମାନେ କାର୍ଯ୍ୟ କରିବା ଉଚିତ ।

---

## ଶାନ୍ତି

୧ । ଶାନ୍ତି ମଣିଷ ଜୀବନରେ ହେଉଛି ଏକ ପରମ ପାବନ ଓ ବାଞ୍ଛନୀୟ ନିଧି ।

୨ । ମଣିଷ ନିଜ ବୃତ୍ତିମାନଙ୍କୁ ନିୟନ୍ତ୍ରଣ କଲେ ଶାନ୍ତି ମିଳିଥାଏ ।

୩ । ସମାଜ ହିଁ ଶାନ୍ତିର କଷଟି ।

୪ । ଶାନ୍ତି ବାହ୍ୟବସ୍ତୁ ନୁହେଁ, ଏହାର ସ୍ଥାନ ଅନ୍ତରରେ ।

୫ । ତରବାରି ସାହାଯ୍ୟରେ ଶାନ୍ତି ପ୍ରତିଷ୍ଠା କରାଯାଇ ପାରେ ନାହିଁ; ପ୍ରେମ ହିଁ ଏହାର ପ୍ରତିଷ୍ଠା ପାଇଁ ହେଉଛି ଏକ ଅମୋଘ ଅସ୍ତ୍ର ।

୬ । ଯାହାକୁ ଆମେ ସୁନ୍ଦର, ଶୁଭଦ ବୋଲି ମନେକରୁ, ତାହା କରିବାରେ ଆମକୁ ଶାନ୍ତି ମିଳିଥାଏ ।

୭ । ଯେ ମନରୁ ବିକାର ତ୍ୟାଗ କରିଥାଏ, ତାକୁ ହିଁ ଶାନ୍ତି ମିଳିଥାଏ, ।

୮ । ସଂସାରର ଉତ୍ଥାନ ପତନ ଭିତରେ ଯେ ନିଜର ମାନସିକ ଶାନ୍ତି ବଜାୟ ରଖେ, ସେ ହିଁ ଉପଯୁକ୍ତ ମଣିଷ ।

---

## ଶାସ୍ତ୍ର

୧ । ଶାସ୍ତ୍ର କେବଳ ମୁଖରେ ଉଚ୍ଚାରଣ କଲେ ଲାଭ ନାହିଁ, ଏହାକୁ ଅଭ୍ୟାସରେ ପକାଇବା ଉଚିତ ।

୨ । ପ୍ରତ୍ୟେକ ଛାତ୍ରଙ୍କୁ ବିଜ୍ଞାନ ପରି ଶାସ୍ତ୍ର ମଧ୍ୟ ଶିକ୍ଷା ଦିଆଯିବା ଉଚିତ ।

୩ । ଶାସ୍ତ୍ର ଯଦି ଦୋଷର ସମର୍ଥନ କରେ, ତାହାହେଲେ, ତାହାକୁ କେହି ମାନି ପାରିବେ ନାହିଁ ।

୪ । ଶାସ୍ତ୍ର ତର୍କ ଓ ସତ୍ୟକୁ ଲଙ୍ଘନ କରି ପାରେ ନାହିଁ ।

---

## ଶିକ୍ଷା

୧ । ଶିକ୍ଷା ହେଉଛି ଏକ ଉଚ୍ଚଗୁଣ; କିନ୍ତୁ ଚରିତ୍ରଠୁଁ ଉଚ୍ଚ ନୁହେଁ ।

୨ । ଆତ୍ମୋନ୍ନତି ପାଇଁ ଶିକ୍ଷା ଦରକାର ।

୩ । ଶିକ୍ଷା ହେଉଛି ଏକ ଯୋଗ ।

୪ । ଗ୍ରାମ-ସ୍ୱରାଜ ପାଇଁ ଜାତିଗତ ଶିକ୍ଷା ନିହାତି ଦରକାର ।

୫ । ଇଂରାଜୀ ଶିକ୍ଷା ଆମର ମସ୍ତିଷ୍କକୁ ଶୋକରେ ମାରି ଦେଉଛି । ତେଣୁ ଆମ୍ଭେମାନେ ବୀର ନାଗରିକ ହୋଇ ପାରୁନାହୁଁ ।

୬ । "ସା ବିଦ୍ୟା ଯା ବିମୁକ୍ତୟେ"—ଶିକ୍ଷା ସଂସ୍ଥାମାନଙ୍କର ଧ୍ୟେୟ ହେବା ଉଚିତ ।

୭ । ମାତୃଭାଷା ମାଧ୍ୟମରେ ସବୁଠାରୁ ଭଲ ଉପାୟରେ ଶିକ୍ଷା ଦିଆଯାଇ ପାରେ ।

୮ । ଯେଉଁ ବିଦ୍ୟା ଶିକ୍ଷା ଦ୍ୱାରା ଆର୍ଥିକ, ସାମାଜିକ ଓ ଆଧ୍ୟାତ୍ମିକ ମୁକ୍ତି ମିଳିଥାଏ, ତାହାହିଁ ପ୍ରକୃତ ଶିକ୍ଷା ।

୯ । ଜ୍ଞାନ ଚରିତ୍ର ପାଇଁ ଦିଆଯିବା ଉଚିତ, ଜ୍ଞାନ ସାଧନ, ଚରିତ୍ର ସାଧ୍ୟ ଅଟେ ।

୧୦ । ଶିକ୍ଷାର ଲକ୍ଷ୍ୟ ହେଉଛି ଚରିତ୍ର ଗଠନ ।

୧୧ । ଛାତ୍ରଙ୍କୁ ମଣିଷ କରି ଗଢ଼ିବା ହେଉଛି ଶିକ୍ଷାର ଉଦ୍ଦେଶ୍ୟ ।

୧୨ । ପ୍ରତ୍ୟେକ ଛାତ୍ର ଅକ୍ଷର ଲେଖି ଶିଖିବା ପୂର୍ବରୁ ଚିତ୍ରକଳା ଶିକ୍ଷା କରିବା ଉଚିତ ।

୧୩ । ଶିକ୍ଷା ଛାତ୍ରମାନଙ୍କୁ ସ୍ୱାବଲମ୍ବନଶୀଳ କରିପାରେ ।

୧୪ । ଗ୍ରାମଉଦ୍ୟୋଗ ଶିକ୍ଷା ଦ୍ୱାରା ଶିଶୁମନର ବିକାଶ କରାଯାଇ ପାରେ ।

୧୫ । ଉପଯୁକ୍ତ ଶିକ୍ଷକ ଗଣିତ ଶାସ୍ତ୍ରକୁ ମଧ୍ୟ ମନୋରଞ୍ଜକ କରିପାରେ ।

୧୬ । ଶିକ୍ଷାର୍ଥୀମାନଙ୍କୁ ଶିକ୍ଷକ କଦାପି ଶାରୀରିକ ଦଣ୍ଡଦେବା ଉଚିତ ନୁହେଁ ।

୧୭ । ବିଦ୍ୟାର୍ଥୀଙ୍କ ସଙ୍ଗରେ ତନ୍ମୟ ହୋଇ ଶିକ୍ଷକ ଉତ୍ତମ ଶିକ୍ଷା ଦେବା ଉଚିତ ।

୧୮ । ଶିକ୍ଷା ବିନା ମଣିଷର ମାନସିକ ବିକାଶ ହୋଇପାରେ ନାହିଁ ।

୧୯ । ବୟଃପ୍ରାପ୍ତ ନ ହୋଇଥିବା ଶିକ୍ଷାର୍ଥୀମାନଙ୍କୁ ଶିକ୍ଷା ପାଇଁ ବିଦେଶ ପଠାଇବା ଉଚିତ ନୁହେଁ ।

୨୦ । ସଙ୍ଗୀତ ବିନା ଶିକ୍ଷା ରୁଚିସମ୍ପନ୍ନ ହୁଏ ନାହିଁ ।

୨୧ । ବୁଦ୍ଧି, ଶରୀର ଓ ଆତ୍ମାର ନିର୍ଭୁଲ ଏକୀକରଣ ଦ୍ୱାରା ଉପଯୁକ୍ତ ମଣିଷ ଗଢ଼ାଯାଇ ପାରେ ଓ ପ୍ରକୃତ ଶିକ୍ଷା ମଧ୍ୟ ସମ୍ଭବପର ହୁଏ ।

୨୨ । ପ୍ରକୃତ ଶିକ୍ଷା ବୁଦ୍ଧି ବୃତ୍ତି ପରିଚାଳନାର ଅନୁଗାମୀ ହେବା ଉଚିତ ।

୨୩ । ଜୀବନର ପ୍ରତିମୁହୂର୍ତ୍ତକୁ ସଦୁପଯୋଗ କରିବାର ପ୍ରଣାଳୀ ହେଉଛି ଏକ ପ୍ରକୃଷ୍ଟ ଶିକ୍ଷା ।

୨୪ । ଆଧ୍ୟାତ୍ମିକ ଓ ଶାରୀରିକ ଶିକ୍ଷା ଦ୍ୱାରା ମଣିଷର ପ୍ରାଣ ପବିତ୍ର ହୁଏ ଓ ଶକ୍ତି ସଞ୍ଚିତ ହୁଏ ।

---

## ଶ୍ରଦ୍ଧା

୧ । ଶ୍ରଦ୍ଧାର ଅର୍ଥ ଆତ୍ମବିଶ୍ୱାସ ଓ ଆତ୍ମ-ବିଶ୍ୱାସର ଅର୍ଥ ହେଉଛି ଈଶ୍ୱରଙ୍କ ଉପରେ ବିଶ୍ୱାସ ।

୨ । ଧର୍ମର ମୂଳରେ ଶ୍ରଦ୍ଧା ଥାଏ, ଯେଉଁଠି ଶ୍ରଦ୍ଧା ନାହିଁ, ସେଠି ଧର୍ମ ନାହିଁ ।

୩ । ଶ୍ରଦ୍ଧା ଓ ବିଶ୍ୱାସ ନ ଥିଲେ ପୃଥିବୀରେ କ୍ଷଣକେ ପ୍ରଳୟ ହୋଇ ଯା'ନ୍ତା ।

୪ । ଯେଉଁଠି ଶ୍ରଦ୍ଧା ଅଛି, ସେଠି ଜୟ ସୁନିଶ୍ଚିତ । ଶ୍ରଦ୍ଧାଳୁ ବ୍ୟକ୍ତିର ଅକର୍ମ ମଧ୍ୟ ସକର୍ମରେ ପରିଣତ ହୁଏ ।

୫ । ମନରେ ଶ୍ରଦ୍ଧା ବଢ଼ିବା ସଙ୍ଗେ ସଙ୍ଗେ ଚିନ୍ତାର ଭାର କମିଥାଏ ।

୬ । ଅପରିମିତ ଶ୍ରଦ୍ଧାରେ ଅନୁପ୍ରାଣିତ କରିବା ଲୋକର ଚରିତ୍ର ନିଷ୍କଳଙ୍କ ହେବା ଉଚିତ ।

୭ । ଶ୍ରଦ୍ଧାର ଅଭାବରେ ମନସ୍କାମନାର ପୂର୍ତ୍ତି ସହଜରେ ସାଧିତ ହୋଇ ପାରେନାହିଁ ।

୮ । ଶ୍ରଦ୍ଧା ବିନା ଜ୍ଞାନ ଅଦୂରଣୀୟ ରହେ ।

୯ । ମୁଁ ତ୍ରିକାଳଦର୍ଶୀ ନୁହେଁ । କି ଦେବତା ନୁହେଁ । ମୁଁ ହେଉଛି ଶ୍ରଦ୍ଧାବାନ୍ ଓ ଈଶ୍ୱରଙ୍କୁ ସର୍ବ ଶକ୍ତିମାନ୍ ବୋଲି ମାନିଥାଏ ।

୧୦ । ଯେଉଁ ଶ୍ରଦ୍ଧା ଅନୁଭବକୁ ଅପେକ୍ଷା କରେ ନାହିଁ, ସେ ହିଁ ପ୍ରକୃତ ଶ୍ରଦ୍ଧା ।

୧୧ । ବଡ଼ ବଡ଼ ବୁଦ୍ଧିମାନ୍ ବ୍ୟକ୍ତି ଯେଉଁ କାର୍ଯ୍ୟ କରିପାରନ୍ତି ନାହିଁ, ଶ୍ରଦ୍ଧାବାନ୍ ବ୍ୟକ୍ତି ତାହା କରିପାରନ୍ତି ।

୧୨ । ମୋର ଶ୍ରଦ୍ଧା ଜ୍ଞାନମୟ ଓ ବିବେକ ପୂର୍ଣ୍ଣ । ଯାହା ବୁଦ୍ଧିର ବିଷୟ ତାହା ଶ୍ରଦ୍ଧାର ବିଷୟ କଦାପି ହୋଇପାରେ ନାହିଁ ।

---

## ସତ୍ୟ

୧ । ସତ୍ୟହିଁ ଈଶ୍ୱର ।

୨ । ସତ୍ୟବିନା ଜୀବନରେ କୌଣସି ସିଦ୍ଧାନ୍ତ କିମ୍ବା ନିୟମ ଚଳିପାରେନା ।

୩ । ଯଦି ସମ୍ପୂର୍ଣ୍ଣ ସତ୍ୟର ପାଳନ କରାଯାଇ ପାରେ, ତାହାହେଲେ ଦୁନିଆଁରେ ସବୁକିଛି ହୋଇପାରେ ।

୪ । ସତ୍ୟ ସନ୍ଧାନୀ ନିର୍ଭୟମନା ହେବା ଉଚିତ ।

୫ । ଯେପରି ଅହିଂସା ସମ୍ମୁଖରେ ହିଂସା ଶାନ୍ତ ହୋଇ ଯାଏ, ସେହିପରି ଶୁଦ୍ଧ ସତ୍ୟ ଆଗରେ ଅସତ୍ୟ ଶାନ୍ତ ହୋଇ ପଡ଼େ ।

୬ । ଯେଉଁ ବ୍ୟକ୍ତି ସର୍ବଦା ସତ୍ୟବାନ୍, ତାଙ୍କ ନିକଟରେ ନୈରାଶ୍ୟର ସ୍ଥାନ ନାହିଁ ।

୭ । ମୋ ଜୀବନ ଯଦି ସତ୍ୟମୟ ହୁଏ, ତାହାହେଲେ ତାହାର ପ୍ରଭାବ ମୋ ସମ୍ପର୍କୀୟ ଲୋକମାନଙ୍କ ଉପରେ ପଡ଼ିବ ।

୮ । ଦୁନିଆଁରେ ସବୁଠାରୁ ବଡ଼ ଶକ୍ତି ହେଉଛି ଲୋକମତ । ଏହା ସତ୍ୟ ଓ ଅହିଂସା ଦ୍ୱାରା ଗଢ଼ାଯାଇ ପାରେ ।

୯ । ସତ୍ୟ ଅସୀମ ।

୧୦ । ଆପଣ ଆପଣଙ୍କର ଜୀବନ ଦେଇ ସତ୍ୟକୁ ଚିହ୍ନିବା ଉଚିତ ।

୧୧ । ସତ୍ୟର ବିଜୟ ସମୟସାପେକ୍ଷ ହୋଇପାରେ; କିନ୍ତୁ ଅସତ୍ୟର ବିଜୟ କଦାପି ସମ୍ଭବପର ନୁହେଁ ।

୧୨ । ସତ୍ୟବିନା ଜଗତର ସ୍ଥିତି ଅସମ୍ଭବ ।

୧୩ । ସତ୍ୟ ଗୋପନୀୟତାକୁ ଘୃଣା କରେ ।

୧୪ । ସତ୍ୟ ହେଉଛି ଧର୍ମର ଉପଯୁକ୍ତ ପ୍ରତିଷ୍ଠା ।

୧୫ । ସତ୍ୟ ସର୍ବଦା ସ୍ୱାବଲମ୍ବୀ ।

୧୬ । ଯେ କାୟମନୋବାକ୍ୟରେ ସତ୍ୟ ଆଚରଣ କରେ ସେ ପରମେଶ୍ୱରଙ୍କୁ ଚିହ୍ନିପାରେ ।

୧୭ । ସତ୍ୟ ହେଉଛି ସାଧ୍ୟ, ଅହିଂସା ହେଉଛି ସାଧନ ।

୧୮ । ସତ୍ୟର ଆରାଧନା ହେଉଛି ଭକ୍ତି ।

୧୯ । ଯେଉଁଠି ସତ୍ୟ ନାହିଁ, ସେଠି ଶୁଦ୍ଧଜ୍ଞାନ ଅସମ୍ଭବ ।

୨୦ । ସତ୍ୟ ପାଳନରେ ଶାନ୍ତି ଅନ୍ତର୍ଭୁକ୍ତ ।

୨୧ । ଅହିଂସାକୁ ଯେତିକି ମୁଁ ଚିହ୍ନିପାରେ, ଏହାର ସହିତରେ ସତ୍ୟକୁ ତା ଠାରୁ ଅଧିକ ଚିହ୍ନିପାରେ ।

୨୨ । ସତ୍ୟ ହେଉଛି ଏକ ବିଶାଳ ବୃକ୍ଷ । ଏହାକୁ ଯେତିକି ସେବା କରାଯାଏ, ସେତିକି ଫଳ ଫଳିଥାଏ ।

୨୩ । ପୃଥିବୀ ସତ୍ୟ ଉପରେ ପ୍ରତିଷ୍ଠିତ ।

୨୪ । ସତ୍ୟ କହିବା ଓ ତଦନୁଯାୟୀ କାର୍ଯ୍ୟ କରିବା ମୋ'ର ଅଭ୍ୟାସଗତ ।

୨୫ । ସତ୍ୟରେ ପ୍ରେମ ଓ ମୃଦୁତାର ସନ୍ଧାନ ମିଳିଥାଏ ।

୨୬ । ସତ୍ୟ ନିକଟରେ କୌଣସି ଜିନିଷ ଗୋପନ ରହେ ନାହିଁ ।
ସତ୍ୟ ହିଁ ଈଶ୍ୱର ।

୨୭ । ଯେଉଁ କାମକୁ ଠିକ୍ ବୋଲି ଭାବୁଛନ୍ତି, ସେଇଆ କରନ୍ତୁ ।
ପରେ ଦୁନିଆ ତାକୁ ଠିକ୍ ବୋଲି କହିବ ।

୨୮ । ମୁଁ ସତ୍ୟରକ୍ଷା କରିବାକୁ ପଶ୍ଚାତ୍‌ପଦ ନୁହେଁ ।

୨୯ । ତରବାରିଠାରୁ ସତ୍ୟର ସାମର୍ଥ୍ୟ ବେଶି ।

୩୦ । ସତ୍ୟହିଁ ମୋର ଧର୍ମ ଏବଂ କେବଳ ଅହିଂସାହିଁ ଈଶ୍ୱର
ପ୍ରାପ୍ତିର ଉପାୟ । ହିଂସାବାଦ ମୁଁ ଚିରକାଳକୁ ତ୍ୟାଗ
କରିଛି ।

---

## ସତ୍ୟାଗ୍ରହ

୧ । ମୋର ବିଶ୍ୱାସ ଯେ ସତ୍ୟାଗ୍ରହ ଦିନେ ବିଶ୍ୱଶକ୍ତି ହେବ ।

୨ । ମୁଁ ଚେଷ୍ଟା କରି ଦୁଇଟି ଅସ୍ତ୍ର ପାଇଛି, ତାହା ହେଉଛି
ସତ୍ୟାଗ୍ରହ ଓ ଅସହଯୋଗ ।

୩ । ସତ୍ୟାଗ୍ରହ କରିବା ପୂର୍ବରୁ, ମଣିଷର ସେଥିପାଇଁ ପ୍ରଗାଢ଼
ଚିନ୍ତା ଓ ନିରବଚ୍ଛିନ୍ନ ଅଧ୍ୟବସାୟ ଦରକାର ।

୪ । ଏହା ସ୍ମରଣ ରଖିବା ଉଚିତ ଯେ ସତ୍ୟାଗ୍ରହ ହେଉଛି
ସଂସାରରେ ସବୁଠାରୁ ବଡ଼ ଶକ୍ତି । ଏଥିପାଇଁ ହୃଦୟରେ
କ୍ରୋଧ ଓ ଦୁର୍ଭାବ ନ ରଖି, କଷ୍ଟ ସହିବା ପାଇଁ କ୍ଷମତା
ହାସଲ କରିବା ଉଚିତ ।

୫ । ସତ୍ୟାଗ୍ରହ ସର୍ବଦା ବଳ ପ୍ରୟୋଗର ବିରୁଦ୍ଧାଚରଣ କରେ ।
ହିଂସା ସମ୍ପୂର୍ଣ୍ଣଭାବେ ତ୍ୟାଗ ନ କଲେ ସତ୍ୟାଗ୍ରହର କଳ୍ପନା
କରି ହୁଏନା ।

୬ । ବିନୟ ସତ୍ୟାଗ୍ରହର ସବୁଠାରୁ କଠିନ ଆଭିମୁଖ୍ୟ ।

୭ । ସତ୍ୟାଗ୍ରହୀର ଅବିନୟୀ ହେବା ଦୁଗ୍ଧରେ ବିଷ ପ୍ରୟୋଗ କରିଲା ପରି ।

୮ । ନିର୍ଭୀକତା ତୁଳନାରେ ସତ୍ୟାଗ୍ରହୀର ନମ୍ରତା ଅଧିକ ହେବା ଉଚିତ । ଗର୍ବ ଓ ସତ୍ୟାଗ୍ରହ ମଧ୍ୟରେ ଦୂରତା ଯଥେଷ୍ଟ ।

୯ । ସତ୍ୟାଗ୍ରହୀ ସର୍ବଦା ବଳବାନ୍ । ତା ନିକଟରେ ଭୀରୁତାର ସ୍ଥାନ ନାହିଁ ।

୧୦ । ସତ୍ୟାଗ୍ରହ ବଳେ ବଳେ ଆମ ପାଖକୁ ଆସେ । ଆମକୁ ଏହା ଖୋଜିବାକୁ ପଡ଼ିନଥାଏ ।

୧୧ । ସତ୍ୟାଗ୍ରହ ଅର୍ଥାତ୍ ସତ୍ୟ ପାଇଁ ଆଗ୍ରହ ଏକ କଷଟିପଥର ପରି । ଆଜି ଜଗତରେ କେତେକ ରାଷ୍ଟ୍ର ସତ୍ୟର ଅବମାନନା କରି ସ୍ୱତନ୍ତ୍ରତା ପାଇ ପାରୁନାହାନ୍ତି ।

୧୨ । ପୂର୍ଣ୍ଣ ସତ୍ୟାଗ୍ରହୀ ନ ହୋଇ ପାରିଲେ, ଏକ ପୂର୍ଣ୍ଣ ମଣିଷ ହେବା ଅସମ୍ଭବ ।

୧୩ । ସତ୍ୟାଗ୍ରହ କେବେ ବ୍ୟର୍ଥ ହୁଏନାହିଁ ।

୧୪ । ସତ୍ୟାଗ୍ରହର ଅର୍ଥ ହେଉଛି ବିରୋଧୀ ଲୋକକୁ କଷ୍ଟ ନ ଦେଇ ନିଜେ କଷ୍ଟ ସ୍ୱୀକାର କରି ସତ୍ୟ ରକ୍ଷା କରିବା ।

୧୫ । ମୋ ପାଇଁ ସତ୍ୟାଗ୍ରହର ନିୟମ ପ୍ରେମର ନିୟମ ପରି ଶାଶ୍ୱତ ।

୧୬ । ସତ୍ୟାଗ୍ରହ ହେଉଛି ଏକ ଦୁଇପାଖରେ ଧାର ଥିବା ତରବାରୀ । ଇଚ୍ଛାନୁଯାୟୀ ଏହାର ଯେ କୌଣସି ପାଖ କାର୍ଯ୍ୟରେ ଲଗା ଯାଇପାରେ ।

୧୭ । ଶକ୍ତି ଓ ଅଧିକାର ଖଣ୍ଡନ ପାଇଁ ଯେଉଁ ସତ୍ୟାଗ୍ରହ କରାଯାଏ ତାହା ସତ୍ୟାଗ୍ରହ ନୁହେଁ, ତାହା ହେଉଛି ଦୁରାଗ୍ରହ ।

୧୮ । ପରାଜିତ ସତ୍ୟାଗ୍ରହୀ ପରାଜୟ ସ୍ୱୀକାର କରିବାରେ ଲଜ୍ୟା ବୋଧ କରିବା ଉଚିତ ନୁହେଁ ।

୧୯ । ସତ୍ୟାଗ୍ରହୀକୁ ମଣିଷସ୍ୱଭାବ ଉପରେ ବିଶ୍ୱାସ ରଖିବା ଉଚିତ ।

୨୦ । ସାଧନା ଓ ବୁଦ୍ଧି ପରାସ୍ତ ହେଲେ ନିଜର ପ୍ରାଣପାତ କରିବା ସତ୍ୟାଗ୍ରହୀର ନିୟମ ।

୨୧ । ସତ୍ୟାଗ୍ରହୀ ସମସ୍ତଙ୍କ ମିତ୍ର । ସେ କାହା ପ୍ରତି ଶତ୍ରୁତା ଆଚରଣ କରିବା ଉଚିତ ନୁହେଁ । ସଫଳ ସତ୍ୟାଗ୍ରହର ଏହା ହେଉଛି ପ୍ରଧାନ ସର୍ତ୍ତ ।

୨୨ । ସତ୍ୟାଗ୍ରହ ସତ୍ୟପ୍ରାପ୍ତି ପାଇଁ ନୁହେ, ସତ୍ୟର ବିଶୋଧନ ଓ ସଦୁପଯୋଗ ପାଇଁ ଉଦ୍ଦିଷ୍ଟ ।

୨୩ । ସତ୍ୟାଗ୍ରାହୀର ସତ୍ୟପ୍ରତି ସର୍ବଦା ଆଗ୍ରହ କରିବା ଉଚିତ । ସତ୍ୟହିଁ ତାହାର ପ୍ରଧାନ ବଳ ।

—*—

## ସଫେଇ

୧ । ନିଜ ଶରୀର, ଖାଦ୍ୟ ପଦାର୍ଥ, ପାଣିପୂ ପରି, ନିଜ ଘର ଓ ବସ୍ତିକୁ ସବୁବେଳେ ସଫାରଖ ।

୨ । ସଫେଇ ସଂସ୍କାର ପ୍ରତିପାଦନ କରିଥାଏ ।

୩ । ସଫେଇ ମଣିଷର ସୁରୁଚିର ପରିଚାୟକ ।

୪ । ସଫେଇ ଦ୍ୱାରା ମନର ଶୁଦ୍ଧତା ବଢ଼େ ଓ ଶୁଦ୍ଧତା ବଢ଼ିଲେ ଆଧ୍ୟାତ୍ମିକତାର ଚରମ ବିକାଶ ହୁଏ ।

—*—

## ସର୍ବୋଦୟ

୧ । ସର୍ବୋଦୟ ମାନବତାର ଚରମବିକାଶର ମୂଳମନ୍ତ୍ର । ଏହାର ଉପଲବ୍ଧି ମଣିଷର ଧ୍ୟେୟ ହେବା ଉଚିତ ।

୨ । ସମୟ ଆସିଲେ ସର୍ବୋଦୟର ଭାବନା ସାରା ଦୁନିଆଁରେ ବ୍ୟାପି ଯିବ ।

୩ । ପ୍ରାଚୀନ କାଳରେ ଆମର ସର୍ବୋଦୟର ଆଦର୍ଶ ଥିଲା ।

୪ । ମୋର ସମାଜବାଦର ଅର୍ଥ ହେଉଛି ସର୍ବୋଦୟ ।

---

## ସଂଗୀତ

୧ । ସଙ୍ଗୀତକୁ ପ୍ରାରମ୍ଭିକ ପାଠ୍ୟ କ୍ରମରେ ଅଙ୍ଗୀଭୂତ କରିବାକୁ ମୁଁ ସମର୍ଥନ କରୁଛି ।

୨ । ସଙ୍ଗୀତରେ ସ୍ୱର ସାମଞ୍ଜସ୍ୟ ପ୍ରତି ଅଧିକ ଜୋର ଦେବା ଉଚିତ ।

୩ । ବାଳକ ଓ ସେବା ସଂଗଠନରେ ମଧ୍ୟ ରାଷ୍ଟ୍ରୀୟଗାନକୁ ଅନିବାର୍ଯ୍ୟ କରାଯିବା ଉଚିତ ।

୪ । ମୋର ସଙ୍ଗୀତ ଜ୍ଞାନ ନାହିଁ; କିନ୍ତୁ ସଙ୍ଗୀତ ପ୍ରତି ଅକଳନ୍ତ ସ୍ନେହ ଅଛି । ବେଳେ ବେଳେ ମୁଁ ସେଥିରେ ମଜ୍ଜି ଯାଇଥାଏ ।

୫ । ଭାରତର ଭକ୍ତିରେ ସଙ୍ଗୀତକୁ ଓ ସଙ୍ଗୀତରେ ଭକ୍ତିକୁ ଅଗ୍ରଗାମୀ କରାଯାଇଥାଏ ।

୬ । ସଙ୍ଗୀତ ପ୍ରଥମେ ଧର୍ମ ଶିକ୍ଷାର ଏକ ଅଙ୍ଗ ଥିଲା । ଏବେ ଦୁର୍ଭାଗ୍ୟବଶତଃ ଏହାକୁ ଶୃଙ୍ଗାରରସର ଏକ ବାହକରୂପେ ବ୍ୟବହାର କରାଯାଉଅଛି ।

---

# ସମବାୟ

୧ । ସମବାୟ ବା ସାମୁଦାୟିକ ପଦ୍ଧତି ଦ୍ୱାରା, କେବଳ କୃଷିକ୍ଷେତ୍ର ପରିଚାଳନା କାହିଁକି, ପଶୁପାଳନ ମଧ୍ୟ ସମ୍ଭବପର ହୋଇ ପାରିବ ।

୨ । ମୋର ଦୃଢ଼ ବିଶ୍ୱାସ ଯେ ସମବାୟ ଚାଷ ନକଲେ, ଆମ୍ଭେମାନେ କୃଷିର ପୂର୍ଣ୍ଣ ଉପକାରିତା ପାଇବା ନାହିଁ ।

୩ । ଗାଁର ଶହେଟି ପରିବାର ମିଳିତ ଭାବେ ଚାଷକରି ଆୟ ବଣ୍ଟନ କରିବା, ବସୁଧାକୁ ଖଣ୍ଡବିଖଣ୍ଡ କରି ଚାଷ କରିବା ଠାରୁ ଅଧିକ ଯୁକ୍ତି ସଂଗତ ।

୪ । ବ୍ୟକ୍ତିଗତ ସ୍ୱାଧୀନତା ବଜାୟ ରଖିବାକୁ ସମବାୟହିଁ ହେଉଛି ଏକମାତ୍ର ଉତ୍କୃଷ୍ଟ ପନ୍ଥା ।

୫ । ସମବାୟ ପଦ୍ଧତିରେ ଦୁଗ୍ଧ ଉତ୍ପାଦନ କଲେ, ଦେଶ ଧନ ଓ ସ୍ୱାସ୍ଥ୍ୟ ଦୃଷ୍ଟିରୁ ଅଧିକ ଲାଭବାନ ହୁଅନ୍ତା ।

୬ । ଲୋକଙ୍କ ମନରେ ସାମୁଦାୟିକ ପ୍ରଚେଷ୍ଟା ଆଣିବା ସମବାୟର ପ୍ରଧାନ ଲକ୍ଷ୍ୟ ।

୭ । ଗ୍ରାମ ସ୍ୱରାଜ ହାସଲ ପାଇଁ ସମବାୟର ସାହାଯ୍ୟ ଯଥେଷ୍ଟ ।

୮ । ସମବାୟ ଆନ୍ଦୋଳନ ଜରିଆରେ ଅସମ୍ଭବହିଁ ସମ୍ଭବ ହୋଇ ପାରେ ।

୯ । ସମବାୟ ଚାଷ ଓ ପଶୁପାଳନ ଜାତୀୟ ଉନ୍ନତିର ପରିଚାୟକ ।

୧୦ । ଗ୍ରାମୋନ୍ନତି ପାଇଁ ଅନ୍ୟାନ୍ୟ ସମିତି ତୁଳନାରେ ସମବାୟ ଗୁଡ଼ିକର ଉପାଦେୟତା ବେଶି ।

୧୧ । ସଭ୍ୟମାନଙ୍କର ସାଧୁତା ନରହିଲେ କୌଣସି ସମବାୟ-ସମିତି ଚଳି ପାରିବନି ।

୧୨ । ଅଧିକ ଲାଭ ଅର୍ଜନ ସମବାୟ ସମିତିମାନଙ୍କର ଉଦ୍ଦେଶ୍ୟ ହେବା ଉଚିତ ନୁହେଁ ।

---

## ସ୍ୱରାଜ

୧ । ମୋ ପକ୍ଷରେ ସ୍ୱରାଜର ଅର୍ଥ ହେଉଛି ଏ ଦେଶର ସବୁଠୁଁ ବଳି ଗ୍ରେଟିଆ ଲୋକଟିର ମୁକ୍ତି ।

୨ । ସ୍ୱରାଜ ଜରିଆରେ ଆମେ ସମଗ୍ର ଦୁନିଆକୁ ସେବା କରିବୁ ଓ ବିଶ୍ୱଶାନ୍ତିକୁ ଦୃଢ଼ୀଭୂତ କରିବାକୁ ଚେଷ୍ଟା କରିବୁ ।

୩ । ଯେଉଁମାନେ ନିଶା ଦ୍ରବ୍ୟ ସେବନ କରନ୍ତି ପୂର୍ଣ୍ଣ ସ୍ୱରାଜ ସେମାନଙ୍କ ନିକଟରେ ଅସମ୍ଭବ ।

୪ । ସ୍ୱରାଜ ହେଉଛି ଗୋଟିଏ ପବିତ୍ର ବୈଦିକ ଶବ୍ଦ । ଏହାର ଅର୍ଥ ଆତ୍ମପରିଚାଳନା, ସ୍ୱେଚ୍ଛାଚାରିତା ନୁହେଁ ।

୫ । ସମସ୍ତ ବାଧା ବନ୍ଧନ ମୁକ୍ତ ସ୍ୱାଧୀନତାକୁ ଯଦି ସ୍ୱରାଜ ବୁଝାଯାଏ ତାହାହେଲେ ସ୍ୱରାଜର ସଜ୍ଞା ଭୁଲ ହେବ ।

୬ । ବହୁସଂଖ୍ୟକ ସ୍ତ୍ରୀ ପୁରୁଷ, ଯେଉଁମାନେ ନିଜ ମାତୃଭୂମିର ଉପକାର ପାଇଁ ଶ୍ରମଦାନ କରନ୍ତି, ସେମାନଙ୍କର ମାନସିକ ତଥା ଶାରୀରିକ ସହଯୋଗରେ ଭାରତର ପରିଚାଳନାକୁ ମୁଁ ସ୍ୱରାଜ କହୁଥାଏ ।

୭ । ସ୍ୱରାଜର ସ୍ଥିତି ବିଶେଷତଃ ବୈଷମ୍ୟ ବିରୁଦ୍ଧରେ ଅଭିଯାନ ଉପରେ ନିର୍ଭର କରେ । ଏହାର ପ୍ରାପ୍ତି ଓ ସୁରକ୍ଷା ପାଇଁ ନିରବଚ୍ଛିନ୍ନ ସଂଗ୍ରାମ ଦରକାର ।

୮ । ରାଜନୈତିକ ସ୍ୱରାଜଠାରୁ ବ୍ୟକ୍ତିଗତ ସ୍ୱରାଜ ଅଧିକ ମୂଲ୍ୟବାନ୍ ।

୯ । ଅହିଂସା ଉପାୟରେ ସ୍ୱରାଜ ଅର୍ଥ ଆଭ୍ୟନ୍ତରୀଣ ବିଶୃଙ୍ଖଳା କିମ୍ବା ଅରାଜକତା ନୁହେଁ । ଏହା ଶାନ୍ତି ଓ ପ୍ରଗତିର ପରିଚାୟକ ।

୧୦ । ଆମ ସ୍ୱରାଜ ପାଇଁ ଶକ୍ତି ବଳିଷ୍ଠସାଧନ ଉପରେ ନିର୍ଭରକରେ ।

୧୧ । ମୋ କଳ୍ପିତ ସ୍ୱରାଜ ସଂସ୍କୃତି ସହିତ ନିରବଚ୍ଛିନ୍ନ ସମ୍ପର୍କ ରକ୍ଷି ଗଢ଼ାଯିବ ବୋଲି ମୁଁ ସିଦ୍ଧାନ୍ତ କରିସାରିଛି ।

୧୨ । ଆମ୍ଭେମାନେ ଯଦି ନିଜେ ପରିଷ୍କାର ପରିଚ୍ଛନ୍ନ ରହିବା ସଙ୍ଗେ ସଙ୍ଗେ ପଡ଼ୋଶୀକୁ ପରିଷ୍କାର ପରିଚ୍ଛନ୍ନ ରଖିବାକୁ ଯତ୍ନ ନକରୁ, ତାହାହେଲେ ସ୍ୱରାଜ ଲାଭକରିବାରେ ଆମେ ସମ୍ପୂର୍ଣ୍ଣ ଅନୁପଯୁକ୍ତ ।

୧୩ । ଲୋକସଭାରେ ଗୃହୀତ ସିଦ୍ଧାନ୍ତ ଆମକୁ ସାମ୍ବିଧାନିକ ସ୍ୱରାଜ ଦେଇପାରେ; କିନ୍ତୁ ଆଭ୍ୟନ୍ତରୀଣ ଅଗଣିତ ସମସ୍ୟାର ଯଦି ଆଶୁସମାଧାନ କରି ନପାରୁ, ତାହାହେଲେ ସ୍ୱରାଜ ଏକ ମିଥ୍ୟା କଳ୍ପନା ବ୍ୟତୀତ ଅନ୍ୟ କିଛି ନୁହେଁ ।

୧୪ । ଲୌକିକ ସ୍ୱାଧୀନତାକୁ ସ୍ୱରାଜ କହିବା ଅସମୀଚୀନ ।

୧୫ । ପ୍ରତ୍ୟେକ ବ୍ୟକ୍ତି ନିଜର ସ୍ୱାଧୀନତା ଓ ନିରାପତ୍ତା ରକ୍ଷାକରି ପାରିଲେ ସ୍ୱରାଜର ତାତ୍ପର୍ଯ୍ୟ ଓ ମହତ୍ତ୍ୱ ରକ୍ଷା କରାଯାଇ ପାରିବ ।

୧୬ । ଯଦି ସ୍ୱରାଜ ଆମକୁ ଏକାଧାରରେ ଶିକ୍ଷିତ ତଥା ଶ୍ରୀବୃଦ୍ଧି କରିବା ସଙ୍ଗେ ସଙ୍ଗେ ଆମ ସଭ୍ୟତାକୁ ଦୃଢ଼ୀଭୂତକରି ନପାରିଲା, ତାହାହେଲେ ଏହା ମୂଲ୍ୟହୀନ ।

୧୭ । ଭାରତୀୟ ସ୍ୱରାଜ ଯଦି କେବଳ ହିନ୍ଦୁ ସଂପ୍ରଦାୟ ଦ୍ୱାରା ପରିଚାଳିତ ହୁଏ, ତାହାହେଲେ ମୁଁ ଏହାକୁ ସ୍ୱରାଜ କହିବି ନାହିଁ ।

୧୮ । ସ୍ୱରାଜର ପରିଚାଳନାରେ ସମସ୍ତଙ୍କର ସମଅଧିକାର ଅଛି ।
୧୯ । ଦୃଢ଼ ଓ ମାତ୍ରସଙ୍ଗତ ସ୍ୱାଧୀନତାହିଁ ସ୍ୱରାଜ ।
୨୦ । ସ୍ୱରାଜ ଆସିବା ପୂର୍ବରୁ ଲୋକମାନଙ୍କ ମନରେ ଜାଗରଣ, ଜ୍ଞାନଲିପ୍‌ସା, ଏକତା ଓ ଅର୍ଥନୈତିକ ଚିନ୍ତା ଆସିବା ଉଚିତ ।
୨୧ । ଗୋଟିଏ ତେଜସ୍ୱୀଜାତି ଗଢ଼ିବା ପାଇଁ ନ୍ୟାଯ୍ୟ ଉପାୟରେ ବଳସଂଗ୍ରହ ମଧ୍ୟ ସ୍ୱରାଜର ଲକ୍ଷ୍ୟ ।
୨୨ । ଅର୍ଥନୈତିକ ଓ ରାଜନୈତିକ ସ୍ୱାଧୀନତା, ମାତ୍ର ଓ ଧର୍ମ ହେଉଛନ୍ତି ସ୍ୱରାଜର ସୀମା ରେଖା ସ୍ୱରୂପ ।
୨୩ । ଯେତେବେଳେ ଜନସାଧାରଣ ସତ୍ୟ ଓ ଅହିଂସା ଉପାୟରେ ସ୍ୱରାଜ ଆଣି ତାହାର ପରିଚାଳନା ପାଇଁ ପ୍ରଚୁର କ୍ଷମତା ହାସଲ କରିବେ; ସେତେବେଳେ ଯାଇ ମୋର ସ୍ୱପ୍ନ ବାସ୍ତବ ହେବ ।
୨୪ । ପ୍ରକୃତ ଗଣତନ୍ତ୍ର କିମ୍ବା ସ୍ୱରାଜ ଅସତ୍ ଓ ହିଂସାତ୍ମକ ଉପାୟରେ ଆସିପାରେ ନାହିଁ ।
୨୫ । ଅହିଂସାକୁ ଅବଲମ୍ବନକରି, ତୋଳି ଉଠୁଥିବା ସ୍ୱରାଜରେ ଲୋକମାନଙ୍କର ଅଧିକାରଗତ ଜ୍ଞାନ ନଆସି କର୍ତ୍ତବ୍ୟଜ୍ଞାନ ଆସିବା ଉଚିତ ।
୨୬ । ଜନସାଧାରଣଙ୍କ ସ୍ୱରାଜରେ ବ୍ୟକ୍ତିଗତ ସ୍ୱରାଜ ଯେ ଅଙ୍ଗୀଭୂତ ଏହା ଭୁଲିଯିବା ଉଚିତ ନୁହେଁ ।
୨୭ । ଅହିଂସାମୂଳକ ସ୍ୱରାଜରେ କେହି କାହାର ଶତ୍ରୁ ନୁହଁନ୍ତି, ବରଂ ସାମୂହିକ ଅଭିପ୍ରାୟ ପାଇଁ ସମସ୍ତେ ଅଗ୍ରସର ।
୨୮ । ଅନ୍ୟାଯ୍ୟ ଅଧିକାର ଓ ଅନଧିକାର ଚର୍ଚ୍ଚା ଅହିଂସାତ୍ମକ ସ୍ୱରାଜରେ ସ୍ୱପ୍ନରେ ପରିଣତ ହୁଏ ।

———

## ସ୍ୱାଧୀନତା

୧ । ଯେଉଁ ସ୍ୱାଧୀନତା ସର୍ବସାଧାରଣଙ୍କ ପ୍ରଚେଷ୍ଟାରୁ ମିଳିଥାଏ, ତାହା ସେମାନଙ୍କର ଅସହଯୋଗରେ ଭୂଷ୍ଠିତ ହୁଏ ।

୨ । ଯେ ସତ୍ୟ ଓ ନ୍ୟାୟରେ ସ୍ୱାଧୀନତା ହାସଲ କରନ୍ତି, ସେ ହିଁ ପ୍ରକୃତ ସ୍ୱାଧୀନ ।

୩ । ମାନବର ସ୍ୱାଧୀନତା ଅଧିକାରକୁ ଯେ ଅପହରଣ କରେ, ସେ ଈଶ୍ୱରଙ୍କଠାରେ ଦଣ୍ଡିତ ହୁଏ ।

---

## ସାଧୁ

୧ । ଭାରତରେ ପଞ୍ଚାବନ ଲକ୍ଷ ସାଧୁ ବେକାର ରହୁଛନ୍ତି । ତେଣୁ ସେମାନେ ହେଉଛନ୍ତି ଦେଶର କଳଙ୍କ ।

୨ । ଗୃହସ୍ଥ ପରି ସାଧୁ ବି ଦେଶର ସେବା କରିପାରେ ।

୩ । ସାଧୁର ଯଦି ଆଧ୍ୟାତ୍ମିକ ନିଧି ନାହିଁ, ତେବେ ସେ ମାନବ ସମାଜରେ ବନ୍ଦିତ ନୁହେଁ ।

୪ । ଯଦି ସାଧୁମାନେ ନିଜର ଆଳସ୍ୟ ପରିହାର କରି ମଠ ଓ ଧର୍ମସ୍ଥାନମାନଙ୍କରେ ଲଗାଉଥିବା ଧନକୁ ସାର୍ବଜନୀନ ସେବାରେ ଲଗାନ୍ତେ, ତାହାହେଲେ ଶିକ୍ଷିତମାନଙ୍କ ମନରେ ସେମାନଙ୍କ ପ୍ରତି ଥିବା ଖରାପ ଭାବନା ଅବିଲମ୍ବେ ଦୂର ହୋଇପାରନ୍ତା ।

୫ । ଯଦି ଲକ୍ଷ ଲକ୍ଷ ସାଧୁ ଜନତାର ସେବା ପାଇଁ ବ୍ରତୀ ହୁଅନ୍ତି, ତାହାହେଲେ ଦେଶର ରଚନାତ୍ମକ ସଂଗଠନ ପାଇଁ ଅଧିକ ଲୋକଶକ୍ତି ମିଳିପାରନ୍ତା ।

୬ । ସାଧୁମାନଙ୍କୁ ମୁଁ ଏତିକି କହିବାକୁ ଚାହେଁ ଯେ ନିଜ ସଂସ୍କୃତି ଧର୍ମ ଓ ଦେଶର ନାମ ସେମାନେ ଯେପରି ନ ବୁଡ଼ାନ୍ତି ।



## ସେବା

୧ । ଗରିବଙ୍କ ସେବାରେ ଆମ୍ଭେମାନେ ଈଶ୍ୱରଙ୍କୁ ଦେଖିପାରିବା ।

୨ । ଆମ୍ଭେମାନେ ଯଦି ପ୍ରତ୍ୟେକ ବ୍ୟବହାରକୁ ଶୁଦ୍ଧପୂତ କରୁ, ଉପଯୁକ୍ତ ସେବକ ହେବାର ଆଶା ରଖିପାରିବା ।

୩ । ଯେ ସେବାଯାଏ, ସେ ସେବକ ପ୍ରତି ଧ୍ୟାନ ଦେବା ଉଚିତ ।

୪ । ପ୍ରାଣୀମାତ୍ରେହିଁ ଦୁଃଖୀ, ସେମାନଙ୍କର ସେବା କରିବା ଅର୍ଥ ଭଗବାନଙ୍କୁ ଭକ୍ତି କରିବା ।

୫ । ପଙ୍ଗୁର ସେବା କରିବା ଏକ ଧର୍ମ କାର୍ଯ୍ୟ । ଭଗବାନ ମୋତେ ସର୍ବଦା ପଙ୍ଗୁ ରୂପରେ ଦେଖା ଦେଇଥାନ୍ତି ।

୬ । ମୁଁ ସେବା କାର୍ଯ୍ୟରେ ବ୍ୟସ୍ତ ଥିଲାବେଳେ ଆବଶ୍ୟକ ନ ପଡ଼ିଲେ ଅନ୍ୟ ବିଚାର କରି ନଥାଏ । ଯଦି କରେ, ମନରେ ମୋହ ଆସିଥାଏ ।

୭ । ମାନବ ସେବାରେ ରାଜନୈତିକ ମତଭେଦ ଓ ସଂଘର୍ଷ ଭୁଲି ସମସ୍ତେ ଏକ ହେବା ଉଚିତ ।

୮ । ନିଜର ଶୁଦ୍ଧସେବା ବଳରେ ଯେଉଁ ପଦ ମିଳିଲା, ତାହା ମୋ ହୃଦୟରେ ଉଚ୍ଚ ଆସନ ପାଇଥାଏ ।

୯ । ଯେ ସେବା ପରାୟଣ, ତା'ର ପତନ ଅସମ୍ଭବ ।

୧୦ । ସେବାରେ ମଧ୍ୟ ମୋହ ସ୍ଥାନ ପାଇଥାଏ । ମୋହ ଭାବ ତ୍ୟାଗ କଲେ ସେବାରେ ପବିତ୍ରତା ଆସିଥାଏ ।

୧୧ । ହୁକୁମ କରିବା ସଙ୍କୀର୍ଣ୍ଣତାର ପରିଚୟସୂଚକ; କିନ୍ତୁ ସେବାର କ୍ଷେତ୍ର ବିସ୍ତୃତ ।

୧୨ । ଈଶ୍ୱରଙ୍କ ଇଚ୍ଛା ହେଲେ ସେ ମୋତେ ମାରି ପାରନ୍ତି କିମ୍ବା ବଞ୍ଚାଇ ପାରନ୍ତି; କିନ୍ତୁ କୁଷ୍ଠରୋଗୀଙ୍କ ସେବା ନ କରି ମୁଁ ରହି ପାରିବି ନାହିଁ ।

୧୩ । ମୁଁ ହେଉଛି ସେବା-ଧର୍ମ ପ୍ରିୟ ।

୧୪ । ସେବା ମଣିଷ ପ୍ରବୃତ୍ତିମାନଙ୍କ ମଧ୍ୟରେ ସବୁଠାରୁ ଉଚ୍ଚ ଓ ମହାନ୍ ।

୧୫ । ସେବାଠାରୁ ବଳି ସଂସାରରେ ଆଉ ବଡ଼ ଜିନିଷ ନାହିଁ ।

୧୬ । ସେବା ଦ୍ୱାରା ସାରା ସଂସାରରେ ଖ୍ରୀଷ୍ଟଧର୍ମ ବିସ୍ତାର ଲାଭ କରି ପାରିଅଛି ।

୧୭ । ଯେଉଁ ସେବା ପଛରେ କରତାଳି ନାହିଁ; କିନ୍ତୁ ଭଗବାନଙ୍କର ଆଶୀର୍ବାଦ ଅଛି, ସେହିଁ ପ୍ରକୃତ ସେବା ।

୧୮ । ନୀରବଭାବେ ସେବା କରାଯିବା ଉଚିତ । ଯେଉଁଠି ତୁମେ ସେବାର ଢୋଲ ବଜାଇ ପିଟିଲ, ସେଠି ନିଜ ସେବକତ୍ୱର ସମାପ୍ତି ଘଟିଲା ।



## ସଂଯମ

୧ । ସମସ୍ତେ ସଂଯମୀ ହୋଇ ସେବାମନୋବୃତ୍ତି ନେଇ ଯେ ଯାହାର କାମକଲେ ବର୍ଣ୍ଣାଶ୍ରମର ପୁନରୁଦ୍ଧାର ପଡ଼ନ୍ତାନାହିଁ ।

୨ । ଅଧିକରୁ ଅଧିକ କର୍ମତତ୍ପର ମଣିଷ ସବୁଠାରୁ ବେଶି ସଂଯମୀ ।

୩ । ଇନ୍ଦ୍ରିୟମାନଙ୍କୁ ନିରଙ୍କୁଶ ଭାବେ ଛାଡ଼ ଦେବା ଅର୍ଥ ଜୀବନ ନୌକାକୁ କର୍ଣ୍ଣଧାର ହୀନ କରି ଛାଡ଼ିବା ।

୪ । ଯଦ୍ଵ ସଂଯମର କଣ୍ଟ ମର୍ଯ୍ୟାଦା ନାହିଁ, ତାହା ହେଲେ ଅହଂସାର ମଧ୍ୟ କଣ୍ଟ ମର୍ଯ୍ୟାଦା ନାହିଁ ।

୫ । ସଂଯମ ଜୀବନର ହେଉଛି ଏକ ସ୍ଵର୍ଣ୍ଣିମ-ସରଣୀ ।

୬ । ସଂଯମୀର ଜୀବନ ସର୍ବଦା ସୁଖମୟ ।

—✳—

## ସଂଗଠନ

୧ । ସଂଗଠନ ଆଧୁନିକ ଯୁଗର ଏକ କାଣ୍ଡଗଣ୍ଡ ହତଆର ପତ୍ର ।

୨ । ସଂଗଠନ ଦ୍ଵାରା ଶ୍ରେଷ୍ଠ ରାଷ୍ଟ୍ରମାନେ ବଡ଼ ବଡ଼ ରାଷ୍ଟ୍ରମାନଙ୍କୁ ବଳଯାଇ ପାରନ୍ତି ।

୩ । ନିର୍ବଳକୁ ବଳବାନ୍ କରିବାକୁ ହେଲେ ସଂଗଠନ ଦରକାର ।

୪ । ଯେଉଁଠି ବୈଯ୍ୟକ୍ତିକ ଶକ୍ତି ସଫଳ ହୁଏ ନାହିଁ, ସେଠି ସଂଘ ଓ ସଂଗଠନ ଦ୍ଵାରା ସଫଳତା ହାସଲ ସହଜ ହୁଏ ।

୫ । ସଂଗଠନ ପିମ୍ପୁଡ଼ି ଓ ଭଉମାନଙ୍କଠାରୁ ଶିକ୍ଷା କରାଯାଇ-ପାରେ ।

୬ । ସଂଗଠନ ଅଭାବରେ କୌଣସି ଆନ୍ଦୋଳନ ସଫଳ ହୁଏନାହିଁ ।

୭ । ସଂଗଠନ ନଥିଲେ କୌଣସି ପ୍ରଚେଷ୍ଟାରୁ ସୁଫଳ ମିଳେନାହିଁ ।

୮ । ସ୍ଵେଚ୍ଛାପୂର୍ବକ କରାଯାଇଥିବା ସଂଗଠନକୁ ମୁଁ ପସନ୍ଦ କରେ ।

୯ । ରାଜ୍ୟ ଯଦ୍ଵ ସଂଗଠିତ ହିଂସାର ପ୍ରତିନିଧିତ୍ଵ କରେ, ତାହା-ହେଲେ ରାଜ୍ୟର ଅସ୍ତିତ୍ଵ ମଧ୍ୟ ହିଂସା ଉପରେ ପ୍ରତିଷ୍ଠିତ ହେବ ।

———

# ସଂସ୍କୃତ

୧ । ବିଦେଶୀ ଭାଷା କବଳରୁ ମୁକ୍ତ ହେଲା ପରେ ବିଦ୍ୟାର୍ଥୀ ସଂସ୍କୃତ ଓ ଅନ୍ୟଭାଷା ସହଜରେ ଶିଖିପାରେ ।

୨ । ଯଦି ମୁଁ ବିଦ୍ୟାଳୟରେ ଆଗ୍ରହ ସହକାରେ ଅଧିକ ସଂସ୍କୃତ ନ ପଢ଼ିଥାନ୍ତି, ତାହାହେଲେ ମୁଁ ଧର୍ମଗ୍ରନ୍ଥଗୁଡ଼ିକୁ ସହଜରେ ବୁଝିପାରନ୍ତି ନାହିଁ ।

୩ । ସଂସ୍କୃତ ଆଗ୍ରହ ପୂର୍ବକ ପଢ଼ାଇଥିବାରୁ ମୁଁ ଶିକ୍ଷକଙ୍କ ନିକଟରେ କୃତଜ୍ଞ ।

୪ । ମୋର ସଂସ୍କୃତଜ୍ଞାନ ଭଲଭାବରେ ନଥିବାରୁ ମୁଁ ବଡ଼ ଦୁଃଖିତ । ପ୍ରତି ହିନ୍ଦୁ ଯୁବକ-ଯୁବତୀ ସଂସ୍କୃତ ଭଲଭାବରେ ଶିକ୍ଷା କରିବା ଦରକାର ।

୫ । ହିନ୍ଦୀ, ଗୁଜୁରାଟି ଓ ସଂସ୍କୃତକୁ ମୁଁ ଗୋଟିଏ ଭାଷାବୋଲି ଭାବିଥାଏ ।

୬ । ଯେ ଭଲଭାବରେ ହିନ୍ଦୀ, ଗୁଜୁରାଟି, ବଙ୍ଗଳା ଓ ମରାଠୀ ଇତ୍ୟାଦି ଶିଖିବାକୁ ଚାହେଁ, ତାକୁ ଯେକୌଣସି ମତେ ସଂସ୍କୃତ ଶିକ୍ଷା କରିବାକୁ ପଡ଼ିବ ।

୭ । ସଂସ୍କୃତ ଗୋଟିଏ ଏପରିଭାଷା, ଯେଉଁଥିରେ ଭାରତୀୟ ସଂସ୍କୃତିର ଚିରସଞ୍ଚିତ ଜ୍ଞାନ ଭରପୂର ହୋଇ ରହିଛି । ସଂସ୍କୃତ ଅଧ୍ୟୟନ ନକରି କୌଣସି ବ୍ୟକ୍ତି ପୂର୍ଣ୍ଣ ଭାରତୀୟ ଓ ବିଦ୍ୱାନ ହୋଇପାରେ ନା ।

୮ । ସଂସ୍କୃତ ହେଉଛି ଦେବଭାଷା । ଅତଏବ ଏହାର ଅଧ୍ୟୟନ ଦ୍ୱାରା ମଣିଷର ଦେବୋପମ ଗୁଣର ବିକାଶ ହୋଇପାରେ ।

୪ । ସଂସ୍କୃତରେ ସଦ୍‌ଗ୍ରନ୍ଥର ସଂଖ୍ୟା ଅଧିକ । ଯାହାକୁ ସେଗୁଡ଼ିକ ଅଧ୍ୟୟନ କରିବାର ସୁଯୋଗ ମିଳେ, ସେ ଧନ୍ୟ ।

---

## ସ୍ୱଦେଶୀ

୧ । ସ୍ୱଦେଶୀ ଭାବନା ସଂସାରର ସବୁ ସ୍ୱତନ୍ତ୍ର ଦେଶରେ ଅଛି ।

୨ । ଭାରତ ସ୍ୱଦେଶୀ ଭାବନା ଦ୍ୱାରା ସ୍ୱାଧୀନତା ପାଇଛି ଓ ଏହି ଭାବନା ଦ୍ୱାରା ତା'ର ଆର୍ଥିକ ବିକାଶ ହୋଇ ପାରୁଛି ।

୩ । ସ୍ୱଦେଶୀ ଭାବନାକୁ ଅନ୍ଧଭକ୍ତିର ସାମଗ୍ରୀ କରିବା ଉଚିତ ନୁହେଁ ।

୪ । ଯଦି କୌଣସି ଭାରତୀୟକୁ ନିଜଦେଶରେ ତିଆରି ହୋଇଥିବା ଜିନିଷର ବ୍ୟବହାର କରିବା ଲାଗି ଉପଦେଶ ଦେବାକୁ ପଡ଼େ, ତାହାହେଲେ ତାହାକମ୍ ଲଜ୍ଜାର ବିଷୟ ନୁହେଁ ।

---

## ସ୍ତ୍ରୀ

୧ । ସ୍ତ୍ରୀ ହେଉଛି ଅହିଂସାର ମୂର୍ତ୍ତି ।

୨ । ମୁଁ ସ୍ତ୍ରୀମାନଙ୍କୁ ସମାଜର ଶିରୋମଣି ରୂପେ ମାନିଥାଏ ।

୩ । ମୁଁ ସବୁ ବିଧବାଙ୍କ ବିବାହକୁ ସମର୍ଥନ କରେ ନାହିଁ; କିନ୍ତୁ ବାଳବିଧବାଙ୍କ ବିବାହ ସର୍ବଥା ଉଚିତ ।

୪ । ପତିର ଦୁର୍ବଳତା ସମୟରେ ସାହାଯ୍ୟ କରିବା ହେଉଛି ସ୍ତ୍ରୀର ପ୍ରଧାନ କର୍ତ୍ତବ୍ୟ ।

୫ । ବୟସ୍କା ସ୍ତ୍ରୀ ବିଧବା ହେଲା ପରେ, ଯଦି ସେ ପୁନର୍ବିବାହ କରିବାକୁ ଇଚ୍ଛା ନକରେ, ତାହାହେଲେ ସେ ବନ୍ଦନୀୟା ।

୬ । ସ୍ତ୍ରୀ ଯଦି ନିର୍ଭୟମନା ହୁଏ, ତାହାର କେହି କିଛି କରିପାରିବେ ନାହିଁ ।

୭ । ସ୍ତ୍ରୀଙ୍କୁ ଅବଳା କହିବା ଅର୍ଥ, ତାଙ୍କୁ ଅପମାନ ଦେବା ।

୮ । ସ୍ତ୍ରୀ ହେଉଛି ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ ।

୯ । ସ୍ତ୍ରୀ ପୁରୁଷର କିଙ୍କରୀ ନୁହେଁ—ସହଧର୍ମିଣୀ, ଅର୍ଦ୍ଧାଙ୍ଗିନୀ ଓ ମିତ୍ର ।

୧୦ । ସ୍ତ୍ରୀମାନେ ନିର୍ଭୟମନା ହେବାକୁ ଶିକ୍ଷା କରିବା ଉଚିତ ।

୧୧ । ସ୍ତ୍ରୀ-ପୁରୁଷ ଜଣେ ଜଣର ପରିପୂରକ ।

୧୨ । ଯେଉଁ ସ୍ତ୍ରୀ ଦେଶରେ ତେଜସ୍ୱୀ, ନିରୋଗ ଓ ସୁଶିକ୍ଷିତ ସନ୍ତାନର ଜନନୀ ହୁଏ, ସେ ପରୋକ୍ଷରେ ଦେଶର ସେବା କରିଥାଏ ।

୧୩ । ବୈଧବ୍ୟ ହେଉଛି ହିନ୍ଦୁ ଧର୍ମର ଶୃଙ୍ଗାର ।

୧୪ । ପବିତ୍ର ସ୍ତ୍ରୀ ସର୍ବଦା ଅଜେୟ ।

୧୫ । ସ୍ତ୍ରୀମାନେ ନିଜର ପବିତ୍ରତା ରକ୍ଷା କରିବାକୁ ଯୋଗ୍ୟା ନୁହନ୍ତି, ଏ ଅଭିଯୋଗ ମିଥ୍ୟା ।

୧୬ । କୌଣସି ପୁରୁଷର ଅନ୍ୟ ସ୍ତ୍ରୀ ସହିତ ସମ୍ବନ୍ଧ ସ୍ଥାପନ ହେଉଛି ମହାପାପ ।

୧୭ । ସ୍ତ୍ରୀମାନେ ଅନ୍ଧ ଚିନ୍ତାରୁ ମୁକ୍ତ ହେବା ଉଚିତ ।

୧୮ । ସ୍ତ୍ରୀ ସହନଶୀଳା, ପୁରୁଷ ପ୍ରତି କର୍ତ୍ତବ୍ୟ ପରାୟଣା ।

୧୯ । ଗୋଟିଏ ବାଳବିଧବା ଅବିବାହିତ ରହିବା ଉଚିତ ନୁହେଁ ।

୨୦ । ଯଦି ବିଧବାମାନେ ବ୍ରହ୍ମଚର୍ଯ୍ୟ ପାଳନ କରିବାକୁ ଚାହାନ୍ତି, ତାହାହେଲେ ସେମାନେ ପରୋପକାରରେ ଜୀବନ ବିତାଇବା ଉଚିତ ।

୨୧ । ପତ୍ନୀକୁ ରକ୍ଷା କରିବା, ତା'ର ଦରକାର ମୁତାବକ ଅନ୍ନ-ବସ୍ତ୍ରର ବ୍ୟବସ୍ଥା କରିବା ହେଉଛି ପତିର କର୍ତ୍ତବ୍ୟ ।

୨୨ । ସତ୍ୟାଗ୍ରହ ସୂର୍ଯ୍ୟ ସମକ୍ଷରେ ବାଲବୈଧବ୍ୟ ରୂପକ ଅନ୍ଧକାର ଅଚିରେ ଅପସରିଯିବ ।

୨୩ । ସାଂସାରିକ ଜୀବନକୁ ସ୍ତ୍ରୀମାନେ ସୁଖମୟ କରିଥାନ୍ତି ।

୨୪ । ସ୍ତ୍ରୀ ଯଦି ଚାହେଁ ସଂସାରକୁ ଆନନ୍ଦମୟ କରିପାରେ ।

୨୫ । ସଦାଚାରିଣୀ ଓ ଆଜ୍ଞାକାରିଣୀ ସ୍ତ୍ରୀ ମିଳିବା ପୁରୁଷ ପକ୍ଷରେ କମ୍ ଭାଗ୍ୟର କଥା ନୁହେଁ ।

୨୬ । ବିଶ୍ୱାସୀ ଓ ପ୍ରେମିକ ପତି ପାଇଲେ ସ୍ତ୍ରୀ ସବୁଠାରୁ ବେଶି ସୁଖୀ ହୋଇଥାଏ ।

୨୭ । ସ୍ତ୍ରୀ, ପୁରୁଷଠାରୁ ଅଧିକ ସେବାଭାବର ଅଧିକାରିଣୀ ।



## ସ୍ୱାବଲମ୍ବନ

୧ । ସ୍ୱାବଲମ୍ବନ ସଫଳତାର ହେଉଛି ପ୍ରଥମ ସୋପାନ ।

୨ । ସର୍ବପ୍ରଥମେ ଆମ୍ଭେମାନେ ସ୍ୱାବଲମ୍ବନ ଶିକ୍ଷା କରିବା ଉଚିତ ।

୩ । ସଂସାରର ମହାପୁରୁଷମାନେ ସ୍ୱାବଲମ୍ବୀ ଓ ଅଧ୍ୟବସାୟୀ ।

୪ । ଦେଶରେ ପ୍ରତି ବାଳକ ବାଳିକାଙ୍କୁ ପ୍ରଥମେ ସ୍ୱାବଲମ୍ବନ ଶିକ୍ଷା ଦିଆଯିବା ଉଚିତ ।

୫ । ଆମ୍ଭେମାନେ ଏହି ଗୁଣ ପାଶ୍ଚାତ୍ୟ ଦେଶବାସୀଙ୍କଠାରୁ ଶିଖିବା ଉଚିତ ।

୬ । ସ୍ୱାବଲମ୍ବନ ଦ୍ୱାରା ସମ୍ପାଦିତ କାର୍ଯ୍ୟରୁ ସୁଖ ମିଳିଥାଏ ।

୭ । ସମାଜ ଓ ରାଷ୍ଟ୍ରପରି, ବ୍ୟକ୍ତି ବିଶେଷର ମଧ୍ୟ ସ୍ୱାବଲମ୍ବନ ଦରକାର ।

୮ । ସ୍ୱାବଲମ୍ବନର ସିଦ୍ଧାନ୍ତ ଗ୍ରାମରେ ପ୍ରୟୋଗ କରାଯାଇ ଯାବତୀୟ ଦରକାରୀ ଜିନିଷ ଉତ୍ପାଦନ କରାଯିବା ଉଚିତ ।

---

## ସମାଜବାଦ

୧ । ସମାଜବାଦ ଆମ ଦେଶର ଏକ ପ୍ରାଚୀନ ଚଳଣି ।

୨ । ସବୁ ରାଷ୍ଟ୍ରରେ ବିନା ହିଂସାରେ ସମାଜବାଦ ମିଳିପାରେ ।

୩ । ସମାଜବାଦ ହେଉଛି ଈଶୋପନିଷଦର ଦାନ ।

୪ । ସମାଜବାଦ ଏକ ସୁନ୍ଦର ଶବ୍ଦ; କାରଣ ଏହା ଅନୁଯାୟୀ ସମାଜରେ ଉଚ୍ଚ ନୀଚ ସମସ୍ତେ ସମାନ ।

୫ । ସମାଜବାଦର ସିଦ୍ଧାନ୍ତ ଅନୁଯାୟୀ ରାଜା ଓ କୃଷକ, ଧନୀ ଓ ନିର୍ଧନ, ପ୍ରଭୁ ଓ ଭୃତ୍ୟ ସମସ୍ତେ ସମାନ ।

୬ । ଉପଯୁକ୍ତ ସମାଜବାଦରେ ବାଦବିସମ୍ବାଦର ସ୍ଥାନ ନାହିଁ ।

୭ । ମୁଁ ନିଜେ ନିଜକୁ ସମାଜବାଦୀ ବୋଲି କହିଥାଏ । କେବଳ ଉପଦେଶରେ ମୋର ସମାଜବାଦ ପର୍ଯ୍ୟବସିତ ନୁହେଁ ।

୮ । ବଡ଼ ବଡ଼ ଶିଳ୍ପର ଜାତୀୟକରଣକୁ ମୁଁ ବିଶ୍ୱାସ କରେ ।

୯ । ଆର୍ଥିକ ସ୍ୱାଧୀନତା ହେଉଛି ଅହିଂସାତ୍ମକ ସମାନତାର ମୁଖ୍ୟ ଚାବି ।

୧୦ । ସମାଜବାଦ ରାଜନୈତିକ ଜଗତର ପ୍ରଗତି ପାଇଁ ଏକ ପଦକ୍ଷେପ ।

୧୧ । ଯଦି ବାଦବିସମ୍ବାଦର ଘୂର୍ଣ୍ଣିବାୟୁରେ ନ ପଡ଼ି, କେବଳ ସମାଜର ହିତ ପାଇଁ କାର୍ଯ୍ୟ କରାଯାଏ, ତାହାହେଲେ ଉତ୍କୃଷ୍ଟ ସମାଜବାଦ ଗଠନ କରାଯାଇପାରିବ ।

---

## ସୂତାକଟା

୧ । ଯେଉଁ କର୍ମ ମୂଳରେ ଦରିଦ୍ରମାନଙ୍କ ପାଇଁ ପବିତ୍ର ତଥା ପ୍ରେମ ମନୋଭାବ ରହିଛି, ସେଥିରେ ଭଗବାନଙ୍କ ଅସ୍ତିତ୍ୱ ରହିଛି । ଅରଟରେ ସୂତା କାଟିବା ଦ୍ୱାରା ମୁଁ ଭଗବାନଙ୍କ ସତ୍ତା ସେଥିରେ ଉପଲବ୍ଧି କରେ ।

୨ । ମୋର ପୂର୍ଣ୍ଣ ବିଶ୍ୱାସ ଯେ ସୂତାକଟା ଓ ଲୁଗାବୁଣାର ପୁନରୁଦ୍ଧାର କରାଗଲେ ଭାରତର ଅର୍ଥନୈତିକ ସମସ୍ୟା ସମାଧାନ ପାଇଁ ସବୁଠାରୁ ବଡ଼ କାମ ହୋଇପାରିବ ।

୩ । ପ୍ରତ୍ୟେକ କୃଷିପ୍ରଧାନ ଦେଶରେ ଲୋକଙ୍କର ଗୋଟିଏ ଗୋଟିଏ ଅତିରିକ୍ତ ପେଷା ରହିବା ଦରକାର । ତାହାହେଲେ ଅବସର ସମୟରେ ସେମାନେ ବେଶ୍ ଦିପଇସା ରୋଜଗାର କରିବେ । ଭାରତୀୟମାନଙ୍କ ପାଇଁ ଅବସର ସମୟରେ ସୂତାକଟା ହିଁ ପ୍ରକୃଷ୍ଟ ପେଷା ।

---

## ସୁଖୀ

୧ । ଯେ ମନର ଅବସ୍ଥା ଅନୁଯାୟୀ ପରିସ୍ଥିତିର ସମ୍ମୁଖୀନ ହୁଏ, ସେ ସୁଖୀ; କିନ୍ତୁ ଯେ ପ୍ରତ୍ୟେକ ପରିସ୍ଥିତିକୁ ନିଜର ମନ ଅନୁସାରେ ବଦଳାଇପାରେ, ସେ ମହାସୁଖୀ ।

୨ । ଲାଳସାରୁ ଦୂରରେ ରହି ନିଜର କର୍ତ୍ତବ୍ୟ କଲେ ପ୍ରକୃତ ସୁଖ ମିଳିଥାଏ ।

୩ । ଯେ ସୁଖୀ ହେବାକୁ ଚାହେଁ ସେ ସର୍ବଦା ଈର୍ଷା, ଦ୍ୱେଷ, ହିଂସାଠାରୁ ଦୂରରେ ରହିବା ଉଚିତ ।

୪ । ଯେ ନିଜର ଅବସ୍ଥାରେ ସର୍ବଦା ସନ୍ତୁଷ୍ଟ, ସେହିଁ ପ୍ରକୃତ ସୁଖୀ ।

# ସ୍ୱାସ୍ଥ୍ୟ

୧ । ଶରୀରରେ ସମସ୍ତ କିଛି ଅଛି, ଯାହା ଶରୀରରେ ନାହିଁ, ତାହା ଜଗତରେ ନାହିଁ ।

୨ । ଶରୀର ହେଉଛି ଜଗତର ଏକ ଶ୍ରେଷ୍ଠ ନମୁନା ।

୩ । ବିଷୟୁରକ୍ଷିତ ହେଲେ ଶରୀର ଦୀର୍ଘାୟୁ ଓ ନୀରୋଗ ହୁଏ ।

୪ । ଯେ ସବୁବେଳେ ସତେଜ, ସେହିଁ ସ୍ୱାସ୍ଥ୍ୟବାନ ।

୫ । ଦିନରେ ଅଧିକ ଶାରୀରିକ ଓ ମାନସିକ ପରିଶ୍ରମ କରିବା ଲୋକ ହେଉଛି ସୁସ୍ଥ ।

୬ । ମଣିଷର ଇନ୍ଦ୍ରିୟ ଓ ମନ ସୁସ୍ଥ ରହିଲେ ଆଦର୍ଶ ସ୍ୱାସ୍ଥ୍ୟରକ୍ଷା କରିଯାଇ ପାରେ ।

୭ । ଶରୀରକୁ ପାଣି, ପବନ, ଖାଦ୍ୟ ନିୟମିତ ଭାବେ ଯୋଗାଇ ଆଳସ୍ୟ ପରିହାର କରି କର୍ମତତ୍ପର ରହିଲେ, ସ୍ୱାସ୍ଥ୍ୟଭଙ୍ଗ ହେବାର କୌଣସି କାରଣ ରହେ ନାହିଁ ।

୮ । ସ୍ୱାସ୍ଥ୍ୟ ଭଲରଖିବାକୁ ହେଲେ ବ୍ରହ୍ମଚର୍ଯ୍ୟବ୍ରତ ପାଳନ କରିବା ନିହାତି ଦରକାର ।

୯ । ଶାରୀରିକ ଓ ମାନସିକ ସମୃଦ୍ଧି ହିଁ ସ୍ୱାସ୍ଥ୍ୟ ।

୧୦ । ଶ୍ରଦ୍ଧାପୂର୍ବକ ଭଗବାନଙ୍କର ସେବା କରିବା ପାଇଁ ଶରୀରର ସୃଷ୍ଟି । ଯେଉଁ ସୃଷ୍ଟିକର୍ତ୍ତା ଆମର ଏ ଶରୀର ଗଢ଼ିଛନ୍ତି ତାହା ପ୍ରଥମେ ଦୁନିଆକୁ ଯେପରି ଶୁଦ୍ଧ ଓ ନିଷ୍କଳଙ୍କ ଅବସ୍ଥାରେ ଆସିଛି, ସେହିପରି ଅବସ୍ଥାରେ ତାଙ୍କୁ ଫେରାଇବାକୁ ହେବ ।

୧୧ । ଶରୀର ଓ ମନ ମଧ୍ୟରେ ଘନିଷ୍ଠ ସଂପର୍କ ଅଛି । ଦୁଇଟି ମଧ୍ୟରୁ ଗୋଟିକର କ୍ଷତହେଲେ, ସମସ୍ତ ଶରୀର କଷ୍ଟ ଭୋଗିଥାଏ । ଶୁଦ୍ଧ ଚରିତ୍ର ହେଉଛି ସ୍ୱାସ୍ଥ୍ୟର କଞ୍ଚି ।